



# ଯୁବା ପଥ ପାଥେୟ

## ଯୁବା କ୍ରାନ୍ତି ବର୍ଷ-ବିଶେଷ
(୨୦୧୬-୨୦୧୮)



ଡା. ପ୍ରଣବ ପାଣ୍ଡ୍ୟା

# ଯୁବା ପଥ-ପାଥେୟ

## ଯୁବାକ୍ରାନ୍ତି ବର୍ଷ-ବିଶେଷ

(୨୦୧୬-୨୦୧୮)



ମୂଳରଚନା

ଡକ୍ଟର ପ୍ରଣବ ପଣ୍ଡ୍ୟା



ଉତ୍କଳାନୁବାଦ

ଡକ୍ଟର କୃତ୍ତିବାସ ନାୟକ

# ଯୁବା ପଥ-ପାଥେୟ

ଲେଖକ

**ଡକ୍ଟର ପ୍ରଣବ ପଣ୍ଡ୍ୟା**

ଅନୁବାଦ

**ଡକ୍ଟର କୃତ୍ତିବାସ ନାୟକ**

ପ୍ରକାଶକ :

**କେ.ପି. ମେମୋରିଆଲ୍ ଆଣ୍ଡ ଚ୍ୟାରିଟେବୁଲ୍ ଟ୍ରଷ୍ଟ**

ଶୈଳଶ୍ରୀ ବିହାର, ଭୁବନେଶ୍ୱର-୭୫୧୦୨୧

ଦୂରଭାଷ - ୯୪୩୯୦୦୭୮୫୪

ପ୍ରଥମ ସଂସ୍କରଣ ୨୦୧୭

ମୂଲ୍ୟ ୩୦/-ଟଙ୍କା ମାତ୍ର

ମୁଦ୍ରଣ : ସମ୍ପର୍କ ପ୍ରେସ୍, ଭୁବନେଶ୍ୱର

---

YUVA PATHA-PATHEYA

***Anthor :*** Dr. Pranav Pandya

***Tr. by :*** Dr. Krutibas Nayak

***Publisher :***

**K.P. Memorial & Charitable Trust**

Sailashree Vihar, Bhubaneswar-751021

Phone no.- 9439007854

1st Edition - 2017

***Price :*** 30/-

Pinted at : Sampark Press, BBSR.

# ଭୂମିକା

ଯୁବାକ୍ରାନ୍ତି ବର୍ଷର ପ୍ରେରଣା, ଗୁରୁପୂର୍ଣ୍ଣିମା ବର୍ଷ ୨୦୧୫ ପରେ ହିଁ ଊର୍ଦ୍ଧ୍ୱଗାମୀ ହେଲା । ବଡ଼ ଉତ୍ସାହର ସହିତ ପୂରାଦେଶର ଯୁବକ-ଯୁବତୀ ଗାୟତ୍ରୀ ତୀର୍ଥ ଆସିଲେ । ମାର୍ଗଦର୍ଶନ ନେଇକରି ଗଲେ । ବସ୍ତୁତଃ ଗୁରୁସତ୍ତାଙ୍କ ଚିନ୍ତନ ପ୍ରବାହ ହିଁ ଆମରି ଲେଖନୀରୁ ପ୍ରସ୍ଫୁଟିତ ହେଇଥିଲା । ପୁଣି ଏହାକୁ 'ଅଖଣ୍ଡଜ୍ୟୋତି' ପୃଷ୍ଠାରେ ପ୍ରକାଶିତ କରାଯାଉଥିଲା । ଆମର ମିଶନ ଭବିଷ୍ୟତରେ କିଭଳି ହେବ, ନୂତନ ପିଢ଼ି ଏହାକୁ କିଭଳି ସମ୍ଭାଳିବେ ଏବଂ ଗ୍ରାମୀଣ ଅଞ୍ଚଳଠାରୁ ଆରମ୍ଭକରି ମହାବିଦ୍ୟାଳୟ ଓ ବିଶ୍ୱ ବିଦ୍ୟାଳୟର ସହରୀ ସଂଗଠନ ପର୍ଯ୍ୟନ୍ତ କିଭଳି ଏହା ବିସ୍ତାରିତ କରାଯିବ, ଏହି ସୂଚନା ମାର୍ଗଦର୍ଶନ ଏଥିରେ ରହିଛି ।

ଦିୟା 'DIYA' ମାଧ୍ୟମରେ ସହରାଞ୍ଚଳରେ ସାଧନା-ଆରାଧନାର ଉତ୍ସାହଜନକ କ୍ରାନ୍ତି ଆସୁଛି । ଏବେ ଏହାକୁ ସମଗ୍ର ଦେଶରେ ଖେଳାଇ ଦେବାକୁ ହେବ । ଆମର ସମସ୍ତ ଯୁବକ-ଯୁବତୀ ମଣ୍ଡଳ, ପ୍ରଜ୍ଞା ମଣ୍ଡଳ, ସ୍ୱାଧ୍ୟାୟ ମଣ୍ଡଳ ଏହି ତଥ୍ୟକୁ ସ୍ୱୀକାର କରି ୨୦୧୮ ମସିହା ଜାନୁଆରୀ ବେଳକୁ ଏହାର ଚରମ ଉତ୍କର୍ଷକୁ ଦେଖିବେ । ଏହା ମୋର ଇଚ୍ଛା । ଆପଣମାନେ ସମସ୍ତେ ଏହି ମିଶନର ଭବିଷ୍ୟତ । ଯୁଗ ନିର୍ମାଣ ଆପଣଙ୍କୁ ହିଁ ଆଣିବାକୁ ହେବ ଏହାରି ମାଧ୍ୟମରେ । ଆପଣଙ୍କୁ ହୋଲିକା ବର୍ଷ ୨୦୧୭ର ମଙ୍ଗଳ କାମନା ।

*-ପ୍ରଣବ ପାଣ୍ଡ୍ୟା*

# ଅନୁକ୍ରମ





# ବାସନ୍ତୀପ୍ରବାହ
## ସମସ୍ତଙ୍କ ଭିତରୁ ଜାଗିଉଠୁ

ବସନ୍ତ କେବଳ ମିଶନ ନିମନ୍ତେ ନୁହେଁ, ସମସ୍ତଙ୍କ ପାଇଁ ଏହାର ଗୁରୁତ୍ୱ ରହିଛି, କାହିଁକି ନା ଏହା ନୂତନ ସନ୍ଦେଶ ନେଇକରି ଆସିଥାଏ । ଗୋଟାଏ ପରିବର୍ତ୍ତନ ଯାହା ଉଲ୍ଲାସର ଏବଂ ଉତ୍ସାହର ସହିତ ହୋଇଥାଏ । ଏହାକୁ ଯୋଗେଶ୍ୱର ଶ୍ରୀକୃଷ୍ଣ ଋତୁରାଜ କହି ନିଜେ ସେଥିରେ ସ୍ଥିତ ବୋଲି କହିଛନ୍ତି । ଆମର ଗୁରୁସତ୍ତାଙ୍କ ଜୀବନରେ ତ ଗୋଟାଏ କ୍ରାନ୍ତିକାରୀ ପ୍ରାରମ୍ଭ ଏହି ବସନ୍ତପର୍ବରୁ ହିଁ ହୋଇଛି । ଏହା ୨୦ ସେପ୍ଟେମ୍ବର ୧୯୨୬ର ପବିତ୍ର ବେଳାରେ ଆସିଥିଲା । ଯାହାଥିଲା ମାତ୍ର ୧୫ ବର୍ଷ ପାଇଁ, କିନ୍ତୁ ଏବେ ଏହା ତ ଆମର ଗୁରୁସତ୍ତା-ଶ୍ରୀରାମଶର୍ମା ଆଚାର୍ଯ୍ୟଜୀଙ୍କ ଭଳି କିଶୋରଙ୍କ ଜୀବନରେ ଗୋଟାଏ କ୍ରାନ୍ତିକାରୀ ଝଡ଼ ନେଇ ଆସିଲା । ଏହି ଅବସରରେ ତାଙ୍କୁ ନିଜର ଗୁରୁଙ୍କ ସୂକ୍ଷ୍ମ ଶରୀରଧାରୀ ହିମାଳୟବାସୀ ସତ୍ତା ନିଜ ବିଷୟରେ ସୂଚନା ମିଳିଥିଲା । ନିଜର ପୂର୍ବଜନ୍ମ ଗୁଡ଼ିକର ସ୍ମରଣ ତାଙ୍କୁ ତାଜା କରିଦେଲା । ଏହି ବାସନ୍ତୀ ପ୍ରବାହ ଜୀବନସାରା ତାଙ୍କୁ ଆଗକୁ ଆଗକୁ ନେଇ ଯାଉଥିଲା । ଜଣେ କିଶୋର କୋଟି କୋଟି ସାଧକଙ୍କର ମାର୍ଗଦର୍ଶକ ହୋଇ ଲୋକଙ୍କ ମଧ୍ୟରେ ଏକ ବିଲକ୍ଷଣ କ୍ରାନ୍ତିକୁ ଜନ୍ମଦେଲେ । ସେ ଆଜୀବନ ଯୁବକ ହିଁ ରହିଥିଲେ । ବସନ୍ତ ହିଁ ଏହାର ମୂଳ କାରଣ ଥିଲା ।

ବସନ୍ତର ଅର୍ଥ ହେଉଛି-ଶକ୍ତିର ବିସ୍ଫୋଟ । ସକାରାତ୍ମକ କାର୍ଯ୍ୟରେ ନିୟୋଜନ ହେବାମାତ୍ରେ ଏହି ଶକ୍ତି କେଜାଣି କେତେ କ'ଣ କରି ଦେଖାଇ ଦିଏ । ସହିଦ୍ ବୀର ଭଗତସିଂହ, ଆଜାଦ, ବିସ୍ମିଲ ଏବଂ ଆଶଫାକ୍‌ଉଲ୍ଲାଙ୍କ ହୃଦୟରେ ଯେତେବେଳେ ଏହି ଶକ୍ତି ଜାଗରିତ ହେଲା, ସେତେବେଳେ ସେମାନେ ଫାଶିଖୁଣ୍ଟକୁ ଚୁମ୍ବନ ଦେଲେ । ଜାତିପାଇଁ ସେମାନେ ପ୍ରାଣବଳି ଦେଇଦେଲେ । ଯେତେବେଳେ ନଚିକେତା, ସ୍ୱାମୀ

ବିବେକାନନ୍ଦ ଓ ଶଙ୍କରଙ୍କ ହୃଦୟରେ, ପୁଣି ମୀରା, ଚିନ୍ନାମ୍ମାଙ୍କ ଅନ୍ତଃକରଣରେ ଏହି ବସନ୍ତ ଆସିଲା, ସେମାନଙ୍କର ଭକ୍ତିର ସ୍ୱରସୁଧା ଦିଗ-ଦିଗନ୍ତ ପର୍ଯ୍ୟନ୍ତ ଗୁଞ୍ଜରିତ ହେଲା, ଜ୍ଞାନର ସମ୍ମିଶ୍ରଣ ସହିତ ଲୋକକ୍ରାନ୍ତିର ସଂନ୍ଦେଶ ନେଇ ।

ପ୍ରତ୍ୟେକ ବସନ୍ତ ଏହିପରି ଗାୟତ୍ରୀ ପରିଜନଙ୍କ ପାଇଁ ନିଜଭଳି ଗୁରୁଙ୍କ ପରି ଆଧ୍ୟାତ୍ମିକ ଦିବସ । ସେମାନେ ମଧ୍ୟ ନିଜର ବସନ୍ତରେ ଏହିପରି ଆନନ୍ଦର ବିସ୍ଫୋଟ ଦେଖନ୍ତି, ଯେଉଁମାନେ ନିଜର ଗୁରୁଙ୍କୁ ଜଗଦ୍‌ଗୁରୁ-ସଦ୍‌ଗୁରୁ-ମହାକାଳଙ୍କର ଅବତାରୀ ଚେତନା କରିଦେଇଛନ୍ତି । ଆମ ସମସ୍ତଙ୍କୁ ଏହା ସତତ ଅନୁଭବ କରିବା ଉଚିତ ଯେ, ଆମମାନଙ୍କ ଭିତରେ ଯୁବକତ୍ୱ ସର୍ବଦା ଜାଗ୍ରତ ରହିଛି, କି ନାହିଁ ? ନକରାତ୍ମକତା, ନିରାଶା, ଉଦାସଭାବ, ଈର୍ଷା, ଅହଂକାର, କ୍ରୋଧ, ଲୋଭ ଇତ୍ୟାଦି ହେଉଛି ପତ୍ରଝଡ଼ା । ଆମେମାନେ ପତ୍ରଝଡ଼ା ଆଡ଼କୁ ନୁହେଁ, ସଂସାର ଆଡ଼କୁ ନୁହେଁ, ବସନ୍ତ ଆଡ଼କୁ ବରଂ ଅଗ୍ରସର ହୋଇ ପ୍ରକୃତିର ପୁଷ୍ପିତ, ପଲ୍ଲବିତ ଆଧ୍ୟାତ୍ମିକ ଆଭାମଣ୍ଡଳରେ ବିଚରଣ କରିବା । ଏହା ଯେକୌଣସି ବୟସରେ ବି ହେଇପାରେ । ଗୋସ୍ୱାମୀ ତୁଳସୀଦାସ ଯେତେବେଳେ ୮୫ବର୍ଷ ବୟସରେ ରାମଚରିତମାନସ ଲେଖି ପାରିଲେ । ଶ୍ରୀପାଦ ଦାମୋଦର ସାତବଲେକର ବୟସର ସତୁରୀତମ ଦଶକରେ ଉପନିଷଦ ଗୁଡ଼ିକର ଟୀକା ଲେଖି ପାରିଥିଲେ, ଯାହାକୁ ପ୍ରତ୍ୟେକ କ୍ଷେତ୍ରରେ ପ୍ରାମାଣିକ ସ୍ୱୀକୃତି ମିଳିଛି । ତେବେ ଆମେ କାହିଁକି ଯୁବକ ହେଇ ନପାରିବା ? ଯେଉଁ ମୁହୂର୍ତ୍ତରେ ଆମେ ନିଜେ ନିଜକୁ ଚିହ୍ନି ନିଜ ଭିତରେ ଥିବା ଉଲ୍ଲାସକୁ ଜାଗ୍ରତ କରିବା, ଠିକ୍ ସେହି ମୁହୂର୍ତ୍ତରେ ଆମେ ଯୁବକ ହୋଇଯିବା । ସ୍ୱାସ୍ଥ୍ୟ ଯେମିତି ବି ଥାଉ, ତା'ର କୁଞ୍ଚି ଆମର ମନ ଓ ଅନ୍ତଃକରଣର ପାଖରେ ଥାଏ । ଯଦି ସେଠାରେ ପତ୍ରଝଡ଼ା ନାହିଁ, ବସନ୍ତ ରହିଛି, ତେବେ ଶରୀରରେ ଭୋଗ ଇଚ୍ଛା ଥିବା ସତ୍ତ୍ୱେ ବି କାମ କେବେ ଅଟକିବ ନାହିଁ ବରଂ ଦୌଡ଼ିବ ।

ଭାରତକୁ ବିଶ୍ୱର ସବୁଠାରୁ ବଡ଼ ଯୁବକ ଦେଶ ବୋଲି କୁହାଯାଏ । ଏଥିପାଇଁ ଭାରତ ସମସ୍ତଙ୍କର ଆଶାର କେନ୍ଦ୍ର ହୋଇ ରହିଛି । ୬୨%ରୁ ଅଧିକ ଭାରତବାସୀ ୩୫ବର୍ଷ ବୟସ ସୀମା ଭିତରେ ଅଛନ୍ତି । ଏହା ହେଉଛି ସ୍ୱାଭାବିକ କଥା । ଯଦି ମାତ୍ର ୧୦-୧୫ ପ୍ରତିଶତ ନିତ୍ୟାନ୍ତ ଦୁର୍ବଳ ସ୍ଥିତିର ମଣିଷକୁ ଛାଡି ଦିଆଯାଏ, ତେବେ ସମଗ୍ର ବିଶ୍ୱର ଭବିଷ୍ୟତ ନିଶ୍ଚିତ ଭାବରେ ଭାରତଦେଶ ଉପରେ ହିଁ ନିର୍ଭର କରିବ ।

ଆମମାନଙ୍କ ପାଖରେ ପ୍ରୌଢ଼ମାନଙ୍କର ଅନୁଭବ ରହିଛି, ମାର୍ଗଦର୍ଶନ ରହିଛି ତଥା ସବଳ, ସୁସ୍ଥ, ପ୍ରାଞ୍ଜ ଚେତନାର ସଶକ୍ତ ଯୁବମାନସ ବି ରହିଛି ।

ଏହା ଅତ୍ୟନ୍ତ ଜରୁରୀ ହେଇଗଲାଣି ଯେ, ଯୁବବର୍ଗଙ୍କୁ ନିଜର ଆନ୍ତରିକ ସାମର୍ଥ୍ୟ ତଥା ଗରିମାମୟ ପରମ୍ପରା ପ୍ରତି ଜାଗ୍ରତ କରାଯାଉ । ଆଦର୍ଶ ଦିଗରେ ଆଗେଇଯିବାର ସଂସ୍କାର ସେମାନଙ୍କ ମଧ୍ୟରେ ଜାଗ୍ରତ କରାଯାଉ । ତେବେଯାଇ ସେମାନେ ସାମାନ୍ୟ ମୁଠାଏ ଖାଦ୍ୟ ପାଇଁ କିମ୍ବା ପରିବାର ପୋଷଣ କାମରେ ନିଜକୁ ସୀମିତ ରଖିବା କାମରୁ ବିରତ ହୋଇ ଆଗକୁ ଯାଇପାରିବେ । ଠିକ୍ ମାର୍ଗର ଅଭାବରୁ ବା ଅସଂଯମତା କାରଣରୁ ଫେସନ ବ୍ୟସନରେ ବୁଡ଼ିରହି ଅଥବା ଉଦ୍ଦଣ୍ଡ ହୋଇ ଗୁଣ୍ଡାଗର୍ଦ୍ଦି, ଆତଙ୍କ, ଧାରଣା ଇତ୍ୟାଦିରେ ଯୁବାବର୍ଗ ଲାଗି ରହିଛନ୍ତି । ଏଥିପାଇଁ ଯୁବଶକ୍ତିଙ୍କୁ ଠିକ୍ ଦୃଷ୍ଟିରେ କ୍ରାନ୍ତି ବିଷୟରେ ସଚେତନ କରିବାକୁ ହେବ । ସାହସ ଓ ଉତ୍ସାହ ସହିତ ବିବେକ ଚେତନା ରହିବା ଉଚିତ । ପ୍ରସ୍ତୁତ ଯୁବକ୍ରାନ୍ତି ବର୍ଷ ଏହିପରି ମଧ୍ୟ କିଛି ମାର୍ଗଦର୍ଶନ ସଂକେତକୁ ନେଇ ଆସିଅଛି ।

ତୈତ୍ତିରୀୟ ଉପନିଷଦର ବ୍ରହ୍ମାନନ୍ଦ ବଲ୍ଲୀ (ଅଷ୍ଟମ ଅନୁବାକ)ରେ କୁହାଯାଏ ।

"ଯୁବାସ୍ୟାତ୍ ସାଧୁ ଯୁବାଧ୍ୟାୟକଃ ।
ଆଶିଷ୍ଠୋ, ଦୃଢ଼ିଷ୍ଠୋ ବଳିଷ୍ଠଃ ।"

ଅର୍ଥାତ୍ "ଯୁବକ ହୋଇଯାଅ, ସଜ୍ଜନ ଯୁବକ ହୁଅ । ଅଧ୍ୟୟନଶୀଳ ହୁଅ । ଶିଷ୍ଟ, ଦୃଢ଼, ବିନୟୀ ଓ ବଳିଷ୍ଠ ହୁଅ ।"

ଏହାକୁ ବୁଝିବା ଅତ୍ୟନ୍ତ ଜରୁରୀ ।

**ଯୁବାସ୍ୟାତ୍‌ର ଅର୍ଥ ହେଉଛି- ପ୍ରକୃତ ଅର୍ଥରେ ଯୁବକ ହୋଇଯାଅ ।** ବାସନ୍ତୀ ଉଲ୍ଲାସରେ ଉଲ୍ଲସିତ ହେଉଥିବା ଯୁବକ ନିରନ୍ତର ବିଧେୟାତ୍ମକ ଚିନ୍ତନ କରୁଥିବା ଯୁବକଙ୍କୁ, ପ୍ରକୃତିର ସୃଜନଶୀଳ ଶକ୍ତି ଯାହା ମିଳିଛି, ସେଥିରୁ କିଛି ନୂଆକରି ଦେଖାଇବା ପାଇଁ ଚେଷ୍ଟା କର । ଏଥିରୁ ଉତ୍ସାହ ସୃଷ୍ଟି ନ ହେଲେ, ତୁମକୁ ଯୁବକ ବୋଲି କେମିତି କୁହାଯିବ ? ନିତ୍ୟ-ନିରନ୍ତର କିଛି ନୂଆକରି ଦେଖାଇବାର କ୍ରମ ସୃଷ୍ଟି ହେଉଥିଲେ, ତାହା ହେଉଛି ଯୁବକତ୍ୱ । ଏହିପରି ଯୁବକ ହେଇଯାଅ ।

**ସାଧୁ ଯୁବକର ଅର୍ଥ ହେଉଛି-** ସଜ୍ଜନ, ନୀତି ପରାୟଣ, ନିଷ୍ଠାବାନ ଯୁବକ, କେବେ ବି ଯିଏ ସତ୍‌ମାର୍ଗରୁ ବିଚ୍ୟୁତ ହୁଏନାହିଁ । ସାଧୁତା ବେଶଭୂଷାରେ ନାହିଁ । ଅନ୍ତରଙ୍ଗ ଚିନ୍ତନ ଓ ଆଚରଣରେ, ଗୁଣଗୁଡ଼ିକର ଜୀବନରେ ଉତ୍ତରଣ କରିବାର ସାଧନା ଯିଏ ନିୟମିତ ରୂପେ କରିଥାଏ, ଏହିପରି ଯୁବକ ହିଁ ସାଧୁ ହୋଇଥାଏ ।

**ଅଧ୍ୟାପକ-** ଯୁବକ ସିଏ ଯେ, ନିତ୍ୟ ନିରନ୍ତର ଶ୍ରେଷ୍ଠ ବିଚାରର ପଠନ, ପାଠନ, ମନନ-ଚିନ୍ତନ କରେ । ଗୋଟିଏ ଅଧ୍ୟୟନ ଅଧିକ ତଥ୍ୟ ସଂଗ୍ରହ ପାଇଁ ହୁଏ । ଗୋଟିଏ ଅଧ୍ୟୟନ ମନ-ବଚନ ଅନ୍ତଃକରଣକୁ ଆମୂଳଚୂଳ ବଦଳାଇବା ପାଇଁ ହୋଇଥାଏ । ଶ୍ରେଷ୍ଠ ବିଚାରରେ ନିରନ୍ତର ମନଧ୍ୟାନରେ ରଖିବାକୁ ସ୍ୱାଧ୍ୟାୟ କୁହାଯାଏ । ଯୁବକମାନେ ନିୟମିତ ଶ୍ରେଷ୍ଠ ଗ୍ରନ୍ଥ ଓ ବିଧେୟାତ୍ମକ ବିଚାରକୁ ସ୍ୱାଧ୍ୟାୟ କରିବା ଉଚିତ । ସ୍ୱାମୀ ବିବେକାନନ୍ଦ, ଶ୍ରୀଅରବିନ୍ଦ ଏବଂ ପୂଜ୍ୟପାଦ ଶ୍ରୀଗୁରୁଦେବ ଏହି କ୍ଷେତ୍ରରେ ଆମର ଆଦର୍ଶ ।

**ଆଶିଷ୍ଠୋ-** ଅନୁଶାସନ, ଶାସନରେ କୁଶଳ ଯୁବ ସଂପ୍ରଦାୟ । ଏମିତି କି ସେମାନେ ରୋଲ୍ ମଡ଼େଲ ବା ଆଦର୍ଶ ଭାବରେ ଉଭା ହେଇପାରିବେ । ଯେଉଁମାନେ ସଦାଚାରେ ଶିକ୍ଷା ପ୍ରଦାନ କରିବାରେ କୁଶଳୀ ସେମାନେ ନିଜର ଆଚରଣ ମାଧ୍ୟମରେ ତାଲିମନେଇ ପାରିବେ ।

**ଦୃଢ଼ିଷ୍ଠୋ-** ଦୃଢ଼ଅଙ୍ଗ, ଇନ୍ଦ୍ରିୟବାଲା, ସମର୍ଥ ତଥା ପରିପକ୍ୱ ବିଚାରଗୁଡ଼ିକୁ ଆଧାରକରି ନିର୍ଣ୍ଣୟ ନିଅନ୍ତୁ । ତା'ଉପରେ ଦୃଢ଼ତାପୂର୍ବକ ଅମଳ କରିବା ବ୍ୟକ୍ତିତ୍ୱ ହୁଅନ୍ତୁ । ଟଳମଳ-ନିରନ୍ତର ଅସଂଯମ ସ୍ୱଭାବର ହେବା ଉଚିତ ନୁହେଁ । ସେ କ୍ରୋଧ ରହିତ, ପୂର୍ଣ୍ଣତଃ ସମର୍ଥ ହେବା ଦିଗରେ ପ୍ରଯତ୍ନଶୀଳ ହେବେ ।

**ବଳିଷ୍ଠ-** ସମସ୍ତ ପ୍ରକାର ବଳରେ ବଳବାନ ହୁଅନ୍ତୁ, ଯେମିତି ସେ ନିଜେ ନିଜର କର୍ତ୍ତବ୍ୟ ପୂରା କରିପାରିବ । ଅନୀତିଠାରୁ ଦୂରେଇ ରହିବାର ମାର୍ଗଦର୍ଶକ ହୁଅନ୍ତୁ ।

ଏହି ଋଷି ଚିନ୍ତନକୁ ଆପଣ ଏହି ଯୁବକ୍ରାନ୍ତି ବର୍ଷର ସମସ୍ତ ଅଭିଯାନର କାର୍ଯ୍ୟକ୍ରମ ଗୁଡ଼ିକୁ ଆଗେଇ ନେବାର କ୍ରମରେ ଲାଗୁ ରଖିବେ ।

୧- **ଯୁବକଙ୍କୁ ଜାଗ୍ରତ କରିବା - ଯୁବକକୁ ଯୋଡ଼ିବା-** ଯୁବକମାନଙ୍କୁ ତାଙ୍କର ସାମର୍ଥ୍ୟ ପ୍ରତି ସଚେତନ କରି ଜାଗ୍ରତ କରାଯିବା ଉଚିତ । ତେବେ ପ୍ରାୟ ଯୁଗନିର୍ମାଣ ସୂତ୍ରରେ ସମସ୍ତ ଯୁବକ-ଯୁବତୀ ସାମିଲ ହେଇପାରିବେ । ଗାୟତ୍ରୀ ପରିବାରର ଧାର୍ମିକ କର୍ମକାଣ୍ଡରେ ଏହାକୁ ଅଙ୍ଗ ସ୍ୱରୂପ ଯୋଡ଼ିଦେଲେ, ପ୍ରଥମେ ସେମାନଙ୍କୁ ଏହା ରୁଚିକର ନ ହେଇପାରେ, କିନ୍ତୁ ନବଯୁଗ ସଂବିଧାନର ଅଠରତମ ସୂତ୍ରରେ ଯୋଡ଼ିଦେଲେ ସେମାନେ ବି ପଛଘୁଞ୍ଚା ଦେବେନାହିଁ । ସମର୍ଥ ଯୁବକ ଯଦି ନୂତନ ଯୁବକମାନଙ୍କୁ ଯୋଡ଼ିବେ, ତାଙ୍କୁ ଯୁବକ୍ରାନ୍ତି ଅଭିଯାନର ବହୁମୁଖୀ ଯୁଗନିର୍ମାଣ ଯୋଜନାଗୁଡ଼ିକରେ ଯୋଡ଼ିବେ, ତେବେ ଏହି କାର୍ଯ୍ୟ ଅତ୍ୟନ୍ତ ସରଳ ହେଇଯିବ । ଗୋଟିଏ ବର୍ଷରେ ହିଁ ଆମେ ଗୋଟାଏ ବଡ଼ ସଂଖ୍ୟାର ଯୁବ ସଂଗଠନକୁ ସଶକ୍ତ କରିପାରିବା ।

୨ -**ସଙ୍ଗଠନ ସଶକ୍ତିକରଣ-** ଆନ୍ଦୋଳନରେ ପ୍ରଭାବିତ ଯୁବ ସଦସ୍ୟମାନଙ୍କୁ ସ୍ଥାନୀୟ ପରିସ୍ଥିତି ଅନୁସାରେ ଗ୍ରାମୀଣ ଓ ସହରାଞ୍ଚଳର ଯୁବମଣ୍ଡଳୀରେ ସଂଗଠିତ କରି ସଶକ୍ତ କରିବାକୁ ହେବ । ଯୁବମଣ୍ଡଳୀ ପୂରା ଦେଶ ଓ ବିଶ୍ୱରେ କେତେକ ସ୍ଥାନରେ କିଛି ବର୍ଷ ହେଲା- ଗତିଶୀଳ ଅଛି । ସେମାନଙ୍କୁ ପୁନର୍ଗଠିତ ଓ ସଶକ୍ତ କରାଯିବ । ଦିୟା (DIYA) ଡ଼ିଭାଇନ୍ ଇଣ୍ଡିଆ ଯୁଥ୍ ଆସୋସିଏସନ ରୂପେ ସଂଗଠିତ ଯୁବକ ସହରୀ, ଅର୍ଦ୍ଧସହରୀ ତଥା ଅନ୍ୟ ସଂଗଠନଗୁଡ଼ିକର ପ୍ରଗତିଶୀଳ ଯୁବକମାନଙ୍କ ସହିତ ସ୍ୱୟଂକୁ ଯୋଡ଼ିଦେବ । ବିଭିନ୍ନ ସାମାଜିକ, ଧାର୍ମିକ ସଂଗଠନ ଗୁଡ଼ିକରେ ବି "ଦିୟା" ଗ୍ରୁପ ସ୍ଥାପିତ ହୋଇପାରିବ । ଏହାର କ୍ରିୟା ପଦ୍ଧତି ପରିସ୍ଥିତି ଅନୁସାରେ ଯୁଗନିର୍ମାଣ ଯୋଜନାର ସୂତ୍ର ଉପରେ ନିର୍ଭର କରିବ ।

୩- **ଯୁବ ପ୍ରବକ୍ତା-** ଯୁବକମାନଙ୍କ ମଧ୍ୟରୁ ଏମିତି ପ୍ରବକ୍ତା ତିଆରି ହେବେ ଯେଉଁମାନେ ବ୍ୟାପକ ଅଧ୍ୟୟନ ଦ୍ୱାରା ନିଜର ଯୁବ ଅଭିଯାନକୁ ସମସ୍ତ ବର୍ଗରେ ଉପସ୍ଥାପିତ କରିପାରିବେ । ଏଥିପାଇଁ ମାର୍ଗଦର୍ଶିକା ପୁସ୍ତକ ତିଆରି ହେବ । ବିଭିନ୍ନ ବିଚାରଧାରା-ଧାର୍ମିକ ଆସ୍ଥା ସଂପନ୍ନ ବ୍ୟକ୍ତି, ଯୁବକ-ଯୁବତୀ, କିଶୋର-କିଶୋରୀମାନଙ୍କ ପାଇଁ ବିଷୟବସ୍ତୁ ତିଆରି ହେବ, ଯେମିତି କି ଯେକୌଣସି ଲୋକ ଯେକୌଣସି ସ୍ଥାନରେ ଏହାକୁ ପ୍ରସ୍ତୁତ କରିପାରିବେ । ପ୍ରୌଢ଼ ବା ବରିଷ୍ଠଙ୍କ ସମର୍ଥ ସହଯୋଗ ତଥା ଯୁବକଗୋଷ୍ଠୀ ଦୁହିଁଙ୍କ ମଧ୍ୟରୁ ପ୍ରବକ୍ତା ବାହାରିବେ ।

୪- **ସପ୍ତସୂତ୍ରୀ ଆନ୍ଦୋଳନ- ପଞ୍ଚ ମହାଅଭିଯାନ-** ସାଧନା, ଶିକ୍ଷା, ସ୍ୱାସ୍ଥ୍ୟ, ସ୍ୱାବଲମ୍ବନ, ବ୍ୟସନମୁକ୍ତ-କୁରୀତିବିର୍ଜନ, ପର୍ଯ୍ୟାବରଣ ସଂରକ୍ଷଣ ତଥା ନାରୀ ସଶକ୍ତିକରଣ ପାଇଁ ଯୁବସଂଗଠନକୁ ପ୍ରେରିତ ପ୍ରଶିକ୍ଷିତ କରାଯିବ । ଏମାନଙ୍କ ମଧ୍ୟରେ କେତେଜଣ ନୂଆ ଯୁବକ ରହିବେ । ଯେଉଁମାନେ ଗୋଟିଏ ବା ଦୁଇଟି ବା ତହିଁରୁ ଅଧିକ ଆନ୍ଦୋଳନକୁ ନିଜେ ବାଛିପାରିବେ । ପଞ୍ଚ ମହାଅଭିଯାନ ଗୁଡ଼ିକରେ ଯୁବକ ଯୋଡ଼, ନିର୍ମଳ ଗଙ୍ଗାଜଳ ସଂରକ୍ଷଣ, ବୃକ୍ଷଗଙ୍ଗା-ସବୁଜିମା ସଂବର୍ଦ୍ଧନ ଅଭିଯାନ, ବାଳସଂସ୍କାରଶାଳା ତଥା ଆଦର୍ଶ ଗ୍ରାମ ଯୋଜନାରେ ଯୁବକମାନଙ୍କୁ ବିଶେଷଭାବରେ ନିୟୋଜନ କରିବାକୁ ପ୍ରୟାସ କରାଯିବ ।

୫- **ଯୁବ ସଂବାଦ ଦ୍ୱାରା ସଘନ ମନ୍ଥନ-** ବିଭିନ୍ନ ଜାଗାରେ ଗୋଷ୍ଠୀ, ଯୁବସଂବାଦ, ଯୁଥ୍, ଏକ୍ସପୋ ଭଳି କାର୍ଯ୍ୟକ୍ରମ ଚାଲିବ । ପରସ୍ପର ସମ୍ବାଦଦ୍ୱାରା ସେମାନଙ୍କୁ ସାଂସ୍କୃତିକ, ଆର୍ଥିକ ସ୍ୱାବଲମ୍ବନ ଉଦ୍ଦେଶ୍ୟରେ ପ୍ରେରିତ କରାଯିବ । ଗ୍ରାମୋଦ୍ୟୋଗ, ଗୋ-କେନ୍ଦ୍ରିତ ଅର୍ଥବ୍ୟବସ୍ଥା, ଜିରୋ ବଜେଟ୍ କୃଷିର ତାଲିମ ଏବଂ ସହରଗୁଡ଼ିକରେ ଟେକ୍‌ନିକ୍ କୌଶଳର ବିକାଶକୁ ଗୁରୁତ୍ୱ ଦେବାପାଇଁ ପାରସ୍ପରିକ ବିଚାର ବିନିମୟ କରି ନିର୍ଦ୍ଧାରଣ କରାଯିବ । ବିଭିନ୍ନ ଅଞ୍ଚଳର ବଛାବଛା ବିଶେଷଜ୍ଞ, ଶିକ୍ଷକଙ୍କଦ୍ୱାରା ବ୍ୟାଖ୍ୟାନ ଦିଆଯିବ । କର୍ମଶାଳାମାନ ଆୟୋଜନ କରାଯିବ ।

୬- **ପ୍ରବାସୀ ଯୁବକ-** ଭାବନାଶୀଳ ଆଂଶିକ ବା ପୂର୍ଣ୍ଣ ସମୟଦାନ କରିପାରୁଥିବା ଯୁବକମାନଙ୍କୁ ପ୍ରେରିତ କରାଯିବ, ଯାହାଦ୍ୱାରା ସେ ତିନିମାସରୁ ଅଧିକ ଗୋଟିଏ ବର୍ଷ ପର୍ଯ୍ୟନ୍ତ ସମୟ ନିଜ ଅଞ୍ଚଳଠାରୁ ଦୂରରେ ଅନ୍ୟ ସ୍ଥାନରେ ଥିବା କେନ୍ଦ୍ରିୟ ଯୁବପ୍ରକୋଷ୍ଠର ମାର୍ଗଦର୍ଶକ ପାଇଁ ଦେଇପାରୁଥିବେ । କିଛି ଯୁବକ ବା ସମର୍ଥ ସହଯୋଗୀ ପ୍ରୌଢ଼, ଯେଉଁମାନେ ନିକଟ ଅତୀତରେ ଅବସର ନେଇଛନ୍ତି, ସେମାନେ ମଧ୍ୟ ଏହି କାର୍ଯ୍ୟ କରିପାରିବେ । ସେମାନଙ୍କୁ ବିଧିବଦ୍ଧ ତାଲିମ ପ୍ରଦାନ କରାଯିବ । ଦେଶର ବିଭିନ୍ନ ଅଞ୍ଚଳରେ ଲକ୍ଷ୍ୟ ନିର୍ଦ୍ଧାରଣ କରି ପ୍ରବାସୀ ଯୁବକଙ୍କ ସଂଖ୍ୟା ବୃଦ୍ଧି କରାଯିବ । ଗୁଣବତ୍ତା ବୃଦ୍ଧିପାଇଁ ଏବଂ ନୂତନ ଯୁବକମାନଙ୍କୁ ମାର୍ଗଦର୍ଶନ କରାଇବା ପାଇଁ ପ୍ରେରିତ କରାଯିବ ।

୭- **ସ୍ୱାବଲମ୍ବୀ ଲୋକପ୍ରିୟ ଯୁବକ-** ୧୯୬୪-୬୫ ମସିହାରେ ପରମପୂଜ୍ୟ ଗୁରୁଦେବ ଯେତେବେଳେ ଯୁଗନିର୍ମାଣ ବିଦ୍ୟାଳୟ ଗାୟତ୍ରୀ ତପୋଭୂମି

ମଥୁରାରେ ଆରମ୍ଭ କରିଥିଲେ, ସେତେବେଳେ ତାଙ୍କର ବିଚାର ଏହା ଥିଲାକି, ସମାଜ ଭିତରୁ ଲୋକସେବୀମାନଙ୍କ ମଧ୍ୟରୁ ଏମିତି ପିଢ଼ି ବାହାର କରାଯିବ, ଯେଉଁମାନେ ଉଦ୍ୟୋଗଜୀବୀ ହେବେ । ଯୁବପିଢ଼ିରୁ ଏମିତି ଚିନ୍ତାଧାରାରେ ଥିବା କେତେଜଣ ଯୁବକ ମିଳିମିଶି ଗୋଟିଏ ମଣ୍ଡଳ ଗଠନ କରି ପାରିବେ, ଯେଉଁମାନେ ମିଳିମିଶି (average) ହାରାହାରି ଭାରତୀୟ ସ୍ତରର ନିର୍ବାହ ବ୍ୟବସ୍ଥା କରି ଶେଷ ସମୟ ପର୍ଯ୍ୟନ୍ତ ଲୋକ ସେବାରେ ଲାଗି ପାରିବେ । ଏହାକୁ ସର୍ଭେ ସାଧାରଣ (serve) ରିଲାୟଣ୍ଟ ଭଲେଣ୍ଟ୍ରି ଏଷ୍ଟାବ୍ଲିସ୍‌ମେଣ୍ଟ୍ ବା ସ୍ୱାବଲମ୍ବୀ ଲୋକସେବା ମଣ୍ଡଳ ନାମରେ ନାମିତ କରାଯାଇପାରିବ । ଏଭଳି ପ୍ରୟୋଗ ବିଭିନ୍ନ ସ୍ଥାନରେ ଆରମ୍ଭ ବି କରାଯାଇଛି । ପରଦୃଷ୍ଟି ସଂସ୍କାର ମୁଖ୍ୟ ହେଉ, ଉଦ୍ୟୋଗ ପ୍ରଧାନ ନ ହେଉ । ଏହା ଭାବି ଏବେ ନୂତନ ମାନଦଣ୍ଡ ପ୍ରସ୍ତୁତ କରାଯାଉଛି ।

୮ - **ସଂସାଧନ କେଉଁଠୁ ଆସିବ ?**- ସମୟଦାନ, ଅଂଶଦାନରେ ହିଁ ମାନବ ସଂସାଧନ-ଅର୍ଥ ସଂସାଧନର ପୂର୍ତ୍ତି ହେଇପାରିବ । ଯାହାକୁ ଯେଉଁ ପ୍ରକାର ରୁଚି ରହିଛି, ସେହି ଦିଗରେ ବିଶେଷ ଜ୍ଞାନ ରହିଛି, ସେ ସେହି କାମକୁ ହାତକୁ ନେଇପାରିବେ । ଏଥିପାଇଁ ସ୍ଥାନୀୟ ଅଞ୍ଚଳକୁ ଆଧାରକରି ଗୋଟିଏ ଫଣ୍ଡ ତିଆରି କରାଯିବ । ଯାହା ସାହାଯ୍ୟରେ ସେମାନେ ସମଗ୍ର ଗତିବିଧିକୁ ଚଳାଇ ପାରିବେ । ପ୍ରତିଭା ସମ୍ପନ୍ନ ବ୍ୟକ୍ତିଙ୍କର ସମୟଦାନ ତ ଏହାକୁ ଆଗକୁ ନେଇଯାଇ ପାରିବେ ।

ପ୍ରବାସୀ ପ୍ରବାହ ସମସ୍ତଙ୍କ ଭିତରେ ଜାଗ୍ରତ ହେଲେ, ତେବେଯାଇ ଆମେ ଚିରଯୁବକ ଗୁରୁଦେବଙ୍କର ପ୍ରକୃତ ଅନୁଧ୍ୟାୟୀ ବୋଲି କହିପାରିବା । ଏଭଳି କିଛି କାମ କରି ଦେଖାଇବାକୁ ହେବ ।



*"ମିଶୁ ମୋର ଦେହ ଏ ଦେଶ ମାଟିରେ*
*ଦେଶବାସୀ ଚାଲି ଯାଆନ୍ତୁ ପିଠିରେ"*
*-ଉତ୍କଳମଣି ଗୋପବନ୍ଧୁ ଦାସ*

# ସାରା ବର୍ଷର ମୁଖ୍ୟ ଆକର୍ଷଣ

୧. ୧୨ ଜାନୁଆରୀ ଯୁବଦିବସରୁ ଶୁଭାରମ୍ଭର ଘୋଷଣା ।

୨. ୧୨ ଫେବୃୟାରୀରୁ କାର୍ଯ୍ୟ ଯୋଜନାର ଶୁଭାରମ୍ଭ । ସମଗ୍ର ଦେଶର ସମସ୍ତ ସଂଗଠନ ଏକତ୍ର ହେବେ ।

୩. ଆତ୍ମ ନିର୍ମାଣଦ୍ୱାରା ରାଷ୍ଟ୍ରନିର୍ମାଣ । ଏହା ହେବ ମୂଳମନ୍ତ୍ର । ସମସ୍ତ କାର୍ଯ୍ୟ ଆରମ୍ଭ "ଆମେ ବଦଳିଲେ, ଯୁଗବଦଳିବ" ରୁ କରିବେ ।

୪. ଉପାସନା, ସାଧନା, ଆରାଧନା, (USA)ରୁ କରିବେ ଯୁବ ଚିନ୍ତନ, ପରିଷ୍କୃତ ଚରିତ୍ର ଏବଂ ବ୍ୟବହାର ଶ୍ରେଷ୍ଠ ।

୫. ଯୁବ ମଣ୍ଡଳ, ସଂସ୍କୃତି ମଣ୍ଡଳ ଗୁଡ଼ିକର ଗଠନ, ପୁନର୍ଗଠନ "ଦିୟା"ର ଅନ୍ୟ ସଂଗଠନଗୁଡ଼ିକ ସହିତ ଯୋଡ଼ିବେ । ଏହା ମାଧ୍ୟମରେ ନୂତନ ବର୍ଗର ପ୍ରବେଶ ହେବ ।

୬. ପ୍ରବାସୀ ଯୁବକ-ଯୁବ ଅଗ୍ରଦୂତମାନଙ୍କର ସମୟଦାନ ଅତିକମରେ ପ୍ରତ୍ୟେକ ଜୋନ୍‌ରେ ଏକଶହ ଜଣ ହେବ ।

୭. ଗ୍ରାମୀଣ ଯୁବକମାନଙ୍କ ଉଦ୍ଦେଶ୍ୟରେ ବିଶେଷ କାର୍ଯ୍ୟକ୍ରମ ରହିବ ।

୮ ସହରୀ, ଅର୍ଦ୍ଧସହରୀ, ଗ୍ରାମୀଣ ଅଞ୍ଚଳର ମନ୍ଥନ ଉଦ୍ଦେଶ୍ୟରେ ବିଶେଷ କାର୍ଯ୍ୟ ଯୋଜନା ।

୯. ସପ୍ତ ଆନ୍ଦୋଳନ ଏବଂ ପଞ୍ଚ ମହାଅଭିଯାନ ସମୂହ ଗଠନ ।

୧୦. ବିଶ୍ୱର ସମସ୍ତ ସ୍ଥାନରେ ବିଶେଷଜ୍ଞମାନଙ୍କ ଦ୍ୱାରା ଯୁବ ପ୍ରବକ୍ତାମାନଙ୍କର ପ୍ରଶିକ୍ଷଣ ବିଷୟ ତଥା ବିଚାର କ୍ରାନ୍ତିର ସଂଦେଶ ପ୍ରଦାନ ।

୧୧. ଶାନ୍ତିକୁଞ୍ଜରେ ଯୁବ ଚେତନା ଶିବିରମାନଙ୍କରେ, ସଂଗଠନ ସଶକ୍ତିକରଣ ଉପରେ ବର୍ଷସାରା ବିଶେଷ କର୍ମଶାଳା ।

୧୨. ଗ୍ରହରି ଯୁବକ୍ରାନ୍ତି ଭିଡ଼ିଓ ରଥଦ୍ୱାରା ପୂରାଦେଶର ସଘନ ମନ୍ଥନ ।

୧୩. ବିଦ୍ୟାଳୟ, ମହାବିଦ୍ୟାଳୟ, ବିଶ୍ୱବିଦ୍ୟାଳୟ ଏବଂ ଅନ୍ୟ ସଂସ୍ଥାଗୁଡ଼ିକ ଉଦ୍ଦେଶ୍ୟରେ ପୂରାବିଶ୍ୱରେ ବିଶେଷ କାର୍ଯ୍ୟକ୍ରମ ।

୧୪. ଅନ୍ୟ ସାମାଜିକ, ଧାର୍ମିକ, ସେବାସଂଘ, ପାରମାର୍ଥିକ ତଥା ବିଗ୍ରହରଧାରା ସହିତ ମିଶୁଥିବା ସରକାରୀ ସଂସ୍ଥା ଓ ସଙ୍ଗଠନ ସହିତ କାର୍ଯ୍ୟକ୍ରମ ।

୧୫. ଯୁବ ପ୍ରତିଭାଙ୍କର ଏକ ଦେଶବ୍ୟାପୀ ନେଟ୍ୱାର୍କ । ବିଦେଶର ଯୁବକମାନଙ୍କୁ ଭାରତୀୟ ଯୁବକମାନଙ୍କ ସହିତ ସୋସିଆଲ ମେଡ଼ିଆରେ ଯୋଡ଼ିବା ।

୧୬. ଆଦର୍ଶଗ୍ରାମ ଶୃଙ୍ଖଳା ନିର୍ମାଣ ଓ ପ୍ରଶିକ୍ଷଣ ।

୧୭. ସ୍ୱାବଲମ୍ବନ ପ୍ରଶିକ୍ଷଣ । ବିଭିନ୍ନ ସ୍ଥାନରେ "ସ୍ୱାଲୋକମ୍" ପ୍ରସ୍ତୁତ କରିବା ।

୧୮ ସ୍ୱୈପାଢ଼ି ସ୍ୱାଧ୍ୟାୟ । ବିଭିନ୍ନ ସ୍ଥାନରେ ଯୁଗଋଷିଙ୍କର ସାହିତ୍ୟର ପାଠାଗାର ସ୍ଥାପନା ।

୧୯ ଯୋଗ ବ୍ୟାୟାମ କେନ୍ଦ୍ରଗୁଡ଼ିକର ସ୍ଥାପନ ।

୨୦. ଯୁବକମାନଙ୍କର ଖେଳ ମହାକୁମ୍ଭ ।

୨୧. ମହାନଗରୀଗୁଡ଼ିକରେ ଯୁଥ୍ ଏକସ୍‌ପୋ, କବି ସମ୍ମିଳନ, ନିବନ୍ଧ ପ୍ରତିଯୋଗିତା ଆୟୋଜନ ।

୨୨ ସଂଗୀତ ସନ୍ଧ୍ୟାର ଆୟୋଜନ ।

୨୩. ବିଭିନ୍ନ ନଗରରେ ମହାବିଦ୍ୟାଳୟ ବିଶ୍ୱବିଦ୍ୟାଳୟରେ "ଦିୟା" ସଂସ୍କୃତି ମଣ୍ଡଳ, କେରିୟର ଗାଇଡ଼୍‌ସ ସେଣ୍ଟର୍‌ର ଗଠନ ।

୨୪. ପ୍ରତିଭାଶାଳୀ ଛାତ୍ରଙ୍କୁ ସମ୍ମାନ, ସଫଳତାର କାହାଣୀକୁ ସୋସିଆଲ୍ ମେଡ଼ିଆରେ ପ୍ରସାରିତ କରିବା ।

୨୫. ଆଦର୍ଶ ବିଦ୍ୟାର୍ଥୀ–ବ୍ୟସନମୁକ୍ତ ଗୁରୁକୁଳ ଗୁଡ଼ିକର ସ୍ଥାପନା ।

୨୬. ଯୁବ ଉକ୍ରର୍ଷ ଏବଂ ବ୍ୟକ୍ତିତ୍ୱ ପରିଷ୍କାର କର୍ମଶାଳା ଗୁଡ଼ିକର ଆୟୋଜନ ।

ଯୁବ ଉନ୍ନୟନ ଏବଂ ଦୀକ୍ଷାରମ୍ଭ ସଂସ୍କାର ପ୍ରତ୍ୟେକ ମହାବିଦ୍ୟାଳୟ-ବିଶ୍ୱ ବିଦ୍ୟାଳୟରେ ।

୨୭. ଯୁବପ୍ରବକ୍ତା ପରିଷଦ ବିଭିନ୍ନ ସ୍ଥାନରେ ଗଠନ ।

୨୮ ଗ୍ରାମ, ନଗର, ତହସିଲ ସ୍ତରରେ ଏକ ଦିବସୀୟ ତଥା ଜିଲ୍ଲାସ୍ତରରେ ଦ୍ୱି-ଦିବସୀୟ ଯୁବ ଚେତନା ଶିବିର ଗୁଡ଼ିକର ଗଠନ ।

୨୯. ପାରିବାରିକ ଯୁବ ସମ୍ମେଳନର ପରଂପରାକୁ ବିକଶିତ କରାଯିବ । ଏଥିରେ ପରିଜନଙ୍କର ପୁତ୍ର, କନ୍ୟା, ବୋହୂ, ଜ୍ୱାଇଁ ଅଂଶ ଗ୍ରହଣ କରିବେ । ସେମାନଙ୍କୁ ମିଶନର ସଂସ୍କାର ସହିତ ପରିଚିତ କରାଯିବ ।

୩୦. ସ୍ଥାନୀୟ / ଜୋନାଲ ଶାନ୍ତିକୁଞ୍ଜ ସ୍ତରରେ ବାଳ ସଂସ୍କାରଶାଳା, ଆଦର୍ଶଗ୍ରାମ, ଗ୍ରାମ ପ୍ରବନ୍ଧନ, ଯୁବଚେତନା ଶିବିର ଏବଂ ସ୍ୱାବଲମ୍ବନ ପ୍ରଶିକ୍ଷଣ କର୍ମଶାଳାର ଆୟୋଜନ । ଏହି ସଂବନ୍ଧରେ ଆହୁରି ଅନେକ କିଛି ରହିଛି ମାତ୍ର ଆମକୁ ମନେ ରଖିବାକୁ ହେବ ଯେ, ଏହି ବର୍ଷ ଗୋଟିଏ ତୋଫାନ୍ ଆସିବାର ଅଛି । ଯୁବକ୍ରାନ୍ତି ମାଧ୍ୟମରେ ମିଶନ ଗୋଟାଏ ନୂତନ ଦିଗନ୍ତ ପ୍ରଦର୍ଶନ କରିବ । ଏଥିପାଇଁ ସମସ୍ତଙ୍କୁ ପ୍ରସ୍ତୁତ ରହିବାକୁ ହେବା ଉଚିତ ।



**देशभक्तों को लोग अक्सर पागल कहते है**

**उनसे कह दो**

**सीने पर जख्म है वो सब फूलों के गुच्छे हैं**

**हमें पागल ही रहने दो हम पागल ही अच्छे हैं**

-ଭଗତ୍ ସିଂହ

# ଯୁବକ୍ରାନ୍ତି ବର୍ଷର ପର୍ଯ୍ୟାୟବଦ୍ଧ ଯୋଜନା

## ଯୁଗ ଦେବତା-ମହାକାଳଙ୍କର ବିଶିଷ୍ଟ ଆହ୍ୱାନ

ଯୁବକ୍ରାନ୍ତି ବର୍ଷ ନିଜର ପୂର୍ଣ୍ଣ ଯୌବନରେ ଉପସ୍ଥିତ । ସବୁଠାରେ ଆନନ୍ଦ ଆଉ ଉଲ୍ଲାସ । ଯୁବକ-ଯୁବତୀ ହୁଅନ୍ତୁ ବା ସେମାନଙ୍କର ଅଭିଭାବକ ବା ସେମାନଙ୍କର ପ୍ରିୟଜନ ହୁଅନ୍ତୁ, ସମସ୍ତେ ପରିବର୍ତ୍ତନର ଏହି ସ୍ୱରୂପକୁ ଦେଖି ଆହ୍ଲାଦିତ ହେଉଛନ୍ତି । "ଯୁବାସ୍ୟାତ୍" ଅର୍ଥାତ୍ ଯୁବକ ହୁଅ । ଏହି ଅର୍ଥକୁ ଏବେ ସମସ୍ତେ ଭଲଭାବରେ ବୁଝିବାରେ ଲାଗିଛନ୍ତି । ତୈତ୍ତିରୀୟ ଉପନିଷଦର ଏହି ସୂତ୍ରଟି କେତେ ମହତ୍ୱପୂର୍ଣ୍ଣ, ସେକଥା ସମସ୍ତେ ଜାଣନ୍ତି । ଏହାର ଅର୍ଥ ହେଉଛି- ଯେଉଁଠି ଥାଅ, ଯେଉଁ ସ୍ଥିତିରେ ଥାଅ, କିନ୍ତୁ ଯୁବକ ହୋଇ ରୁହ । ବୟସରେ ନୁହେଁ, ମନର ଉତ୍ସାହରେ, ଅଗ୍ରଣୀ ହେବାରେ ନୂତନ ସଂକଳ୍ପରେ, ଭିତରୁ ଜାଗ୍ରତ ଆତ୍ମବିଶ୍ୱାସରେ ଏବଂ ବିଧେୟାତ୍ମକତାରେ ଭରିଥିବା ବିଚାରରେ ଯୁବକ ହୋଇ ରୁହ । ଯଦି ଏହାର ଅର୍ଥ ବୁଝି ହେଇଯିବ, ତେବେ 'ଯୁବକ' ନାମରେ ଯିଏ ବିଶ୍ୱ ବିଦ୍ୟାଳୟରେ ବିତଣ୍ଡାବାଦ ଖେଳାଉଛନ୍ତି, ରାଜନୈତିକ ଦଳର ବିଭିନ୍ନ ବିବାଦରେ ଅଂଶ ଗ୍ରହଣକରି ନିଆଁକୁ ଡେଇଁ ପଡୁଛନ୍ତି, ସେଥିରୁ ସେମାନେ ବାହାରି ଆସି ପାରିବେ । ଏସବୁ ବନ୍ଦ ହେଇଯାଉ ଏବଂ ଆମ ଦେଶର ଯୁବଶକ୍ତି ସୃଜନାତ୍ମକ ପ୍ରୟୋଜନରେ ଲାଗି ଯାଆନ୍ତୁ ।

### ବ୍ୟସନମୁକ୍ତି ଏବଂ କୁରୀତି ଉନ୍ମୂଳନର ଅଭିଯାନ

ଆଜିର ସମାଜରେ ବ୍ୟସନ ବହୁତ ଦ୍ରୁତ ଗତିରେ ବଢ଼ି ଚାଲିଛି । କୋମଳମତି ଶିଶୁମାନଙ୍କ ମଧ୍ୟରେ ମଧ୍ୟ ଏହାର କୁପ୍ରଭାବ ପଡୁଛି । ଏହାଦ୍ୱାରା ସମାଜରେ ଅପରାଧ ପ୍ରବୃତ୍ତି ବଢୁଛି । ନିଶା ଏବଂ ମଦ, ଡ୍ରଗ୍‌ସର ପ୍ରଚଳନ ପୂରା ଦେଶର ଯୁବବର୍ଗଙ୍କ ମଧ୍ୟରେ ଖୁବ୍ ଜୋରରେ ବଢ଼ି ଚାଲିଛି । ନକରାତ୍ମକତା, ନିରାଶା, ଅବସାଦକୁ ଦୂର କରିବାପାଇଁ ଏହାକୁ ଆପଣେଇ ନେଉଛନ୍ତି । ଏହା ହେଉଛି ଧୀର ଜହର । ଏହା

ସାମାଜିକ ସ୍ୱାସ୍ଥ୍ୟ ପାଇଁ ବଡ଼ ଘାତକ । ଶରୀର ଏବଂ ଜନଶକ୍ତି ଏହାଦ୍ୱାରା ରୁଗ୍ଣ ହେଇଯାଉଛି । ସେହିପରି, ବ୍ୟୟବହୁଳ ବାହାଘର, ଯୌତୁକ, ପ୍ରଦର୍ଶନ ଇତ୍ୟାଦି ଅପସଂସ୍କୃତି ଦ୍ୱାରା ସମାଜ ବେଇମାନ ଓ ଦରିଦ୍ର ହେଇଯାଉଛି । ଆଦର୍ଶ ବିବାହର ପ୍ରଚଳନ କମି କମି ଆସୁଛି । ସବୁ ଜାଣିଥିବା ବୁଝିଥିବା ମଣିଷ ବି ଏହିପରି କାର୍ଯ୍ୟକରିବାକୁ ସଂକୋଚବୋଧ କରୁନାହାନ୍ତି । କାହିଁକି ନା ସେମାନଙ୍କର ଅହଂ ପ୍ରଦର୍ଶନ ଏହାର ପଛରେ ମୁଖ୍ୟ ହୋଇଥାଏ ।

କନ୍ୟା ଭୃଣହତ୍ୟା ଆମ ଦେଶରେ ଲାଗିଥିବା ସବୁଠାରୁ ବଡ଼ କଳଙ୍କ । ପୁଅ-ଝିଅର ଅନୁପାତରେ ଏହାର ଅନ୍ତର ବଢ଼ି ବଢ଼ି ଚାଲିଛି । ଆମମାନଙ୍କ ମନରେ ଏବେ ବି ଭ୍ରାନ୍ତ ଧାରଣା ରହିଆସିଛି ଯେ, କନ୍ୟା ସନ୍ତାନ ଆମ ଉପରେ ଗୋଟାଏ ବୋଝ । ଏହା ବିରୁଦ୍ଧରେ ଆନ୍ଦୋଳନ ଚାଲିବା ଦରକାର । ଯେମିତି କି କନ୍ୟା ସନ୍ତାନ ବଞ୍ଚି ରହିବେ ଏବଂ ସମାଜରେ ଭ୍ରୁଣ ହତ୍ୟା କରିବାର ପାପରୁ ସୃଷ୍ଟ ସମ୍ଭାବିତ ବିପଦରୁ ସମସ୍ତଙ୍କୁ ରକ୍ଷା କରାଯାଇ ପାରିବ ।

ଭିକ୍ଷା ବ୍ୟବସାୟ ଆମ ଦେଶରେ ବଢ଼ିଆ ଜମିଛି । ପିଲାମାନଙ୍କୁ ଅକର୍ମଣ୍ୟ କରିଦେଇ କିଛି ବଦମାସ ତାଙ୍କ ମାଧ୍ୟମରେ ଭିକ୍ଷା ବ୍ୟବସାୟ କରୁଛନ୍ତି । ବିଭିନ୍ନ ସହର ବଜାରରେ ଏଭଳି କୁକର୍ମ ଚାଲିଛି । ପ୍ରତିବର୍ଷ କେତେ ଯେ ଅସହାୟ ଶିଶୁଙ୍କୁ ଏଭଳି ଅକ୍ଷମ କରି ଦିଆଯାଉଛି । ଏଥିପାଇଁ ସମଗ୍ର ବିଶ୍ୱରେ ଭାରତବର୍ଷର ଛବି ଖରାପ ହୋଇ ଚାଲିଛି । ଅପରାଧୀମାନେ ବି ଧରାପଡ଼ି କଠୋର ଦଣ୍ଡିତ ହେଉଛନ୍ତି । ଉଚ୍ଚ-ନୀଚ, ଧର୍ମ ସଂପ୍ରଦାୟ, ଜାତି-ଅଜାତି, କଳା-ଗୋରା ଭେଦଭାବ ଏବେ ବି ଏକବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକରେ କମ୍ ହୋଇ ପାରିନାହିଁ । ଆମକୁ ଏଥିପାଇଁ ମଧ୍ୟ ସଂଘର୍ଷ କରିବାକୁ ପଡ଼ିବ । କାମଚୋରୀ, ହାରାମଖୋରୀକୁ ପରମପୂଜ୍ୟ ଗୁରୁଦେବ ସାମାଜିକ ପାପ କହନ୍ତି । ବସ୍ତୁତଃ ଆମ ଦେଶର ବିକାଶ ଦିଗରେ ଏହି ଦୁଇଟି ପ୍ରବୃତ୍ତି ସବୁଠାରୁ ଅଧିକ ଘାତକ ହେଉଛି । ଆମକୁ ଏସବୁର ବିରୁଦ୍ଧରେ ଜନଜାଗରଣ ପାଇଁ ବିଭିନ୍ନ ସ୍ଥାନରେ କର୍ମଶାଳାର ଆୟୋଜନ କରିବାକୁ ହେବ । ସେମାନଙ୍କ ସହିତ ଲଢ଼ିବାକୁ ସଂକଳ୍ପ କରାଇବାକୁ ହେବ । ସମାଜରେ ବ୍ୟଭିଚାରକୁ ବଢ଼ାଉଥିବା ସୋସିଆଲ୍ ମିଡିଆ ସଂପର୍କରେ ବି ସମସ୍ତଙ୍କୁ ସାବଧାନ କରାଇବାକୁ ପଡ଼ିବ । ହ୍ୱାଟସ୍‌ଅପ ହେଉ କିମ୍ବା ଫେସ୍‌ବୁକ୍ ବା ଭିଡ଼ିଓ କ୍ଲିପ୍, ଏହାର ଦୁରୂପଯୋଗ ଦ୍ୱାରା

ସମାଜରେ ଘାତକ ବ୍ୟସନ ବଢ଼ିଚାଲିଛି । ଏହାର ସଦୁପଯୋଗ କରାଗଲେ ତାହା ଆମପାଇଁ ଉପଯୋଗୀ ହୋଇପାରିବ । ବିବେକ ସମ୍ମତ ଉପଯୋଗ କିଭଳି ହେବ, ଏକା ସମସ୍ତଙ୍କୁ ବୁଝାଇବାକୁ ପଡିବ । ବିଶେଷ କରି ନବଯୁବକମାନଙ୍କୁ ଏଦିଗରେ ସଚେତନ କରାଇବାକୁ ପଡ଼ିବ ।

ନିଶାମୁକ୍ତ ସମାଜ ଗଢ଼ିବା ପାଇଁ "ଡ଼ି.ଏଡ଼ିକ୍ସନ୍ କ୍ୟାମ୍ପ" ବା ନିଶା ନିବାରଣ ଶିବିର ଆୟୁର୍ବେଦିକ ଓ ହୋମିଓପାଥିକ୍ ଔଷଧଦ୍ୱାରା ନିଶା ନିବାରଣର ପ୍ରୟାସ ଏବଂ ପ୍ରେରଣାଦାୟକ ପୋଷ୍ଟରକୁ ବିଭିନ୍ନ ସ୍ଥାନରେ ଲଗାଇବାକୁ ହେବ । ଏହି କାର୍ଯ୍ୟ କୁରୀତି ନିବାରଣ ପାଇଁ ବି କରିବା ଉଚିତ । କୁରୀତି ନିବାରଣ ଓ ସତ୍‌ପ୍ରବୃତ୍ତି ସଂବର୍ଦ୍ଧନ ଉଦ୍ଦେଶ୍ୟରେ ବିଭିନ୍ନ ସ୍ଥାନରେ ଶୋଭାଯାତ୍ରା ବାହାର କରିବାକୁ ହେବ । ଏଥିପାଇଁ ସଂକଳ୍ପପତ୍ର ପୂରଣ କରାଇବାକୁ ହେବ । ସଂକଳ୍ପକୁ ଦୃଢ଼ କରିବାପାଇଁ ଆଧ୍ୟାତ୍ମିକ ଉପଚାର, ଯେମିତି ଗାୟତ୍ରୀ ସାଧନା, ଧ୍ୟାନ, ଧାରଣା ଏବଂ ଯଜ୍ଞ ଭଳି ସୁକର୍ମର ପ୍ରଚଳନକୁ ବଢ଼ାଇବାକୁ ହେବ । ମଇ ମାସ ୩୧ ତାରିଖକୁ ତମାଖୁ ବା ବ୍ୟସନ ନିଷେଧ ଦିବସ ସମଗ୍ର ବିଶ୍ୱରେ ପାଳନ କରାଯାଏ । ଆମେ ମଧ୍ୟ ଏହି ଦିବସରେ ଅଧିକରୁ ଅଧିକ ଅଂଶ ଗ୍ରହଣ କରିବା । ଏହାଦ୍ୱାରା ଏହି ଦିବସର ଉପଯୋଗିତା ବଢ଼ିବ । ଆମକୁ ଏଥିପାଇଁ ଯୁଦ୍ଧସ୍ତରୀୟ ପ୍ରୟାସରେ ଲାଗି ରହିବାକୁ ହେବ । ଚରସ୍, ସ୍ମେକ୍, ଅଫିମ ଓ କଫ୍‌ସିରପ ଆୟୋଡେକ୍ସ ପ୍ରଭୃତି ନିଶାପାଇଁ ବ୍ୟବହାର କରାଯାଉଛି । ଏଥି ନିମନ୍ତେ ପ୍ରତ୍ୟେକ ମଣିଷକୁ ସଚେତନ କରାଇବା ଫଳରେ ଆମେ ଏହି ମହାଭାରତ ଯୁଦ୍ଧରେ ଜୟଯୁକ୍ତ ହୋଇପାରିବା ।

୨ **ପ୍ରବାସୀ ଯୁବକ-** ପ୍ରତିଭାଶାଳୀ, ଭାବନାଶୀଳ, ସମୟଦାନ କରିବାକୁ ସକ୍ଷମ ଏବଂ ତାଲିମପ୍ରାପ୍ତ ଯୁବକ-ଯୁବତୀଙ୍କ ଉଦ୍ଦେଶ୍ୟରେ ଏକ ବିଶେଷ କାର୍ଯ୍ୟ ଯୋଜନା ପ୍ରସ୍ତୁତ କରାଯାଇଛି । ପ୍ରବାସୀ ଯୁବକ ନିଜର ପରିସ୍ଥିତିକୁ ଦେଖି ନିର୍ଦ୍ଧାରଣ କରିବେ କି ସେମାନେ କେତେ ସମୟ ଦେଇପାରିବେ । ନିଜର ପାଠପଢ଼ା ସହିତ, ଚାକିରିର କର୍ତ୍ତବ୍ୟ ପାଳନ ସହିତ ବି ସମୟ ଦିଆଯାଇ ପାରିବ । ପ୍ରଥମେ ନିଜ ଅଞ୍ଚଳକୁ ଜାଗ୍ରତ କରିବା । ପୁଣି ଯୁବପ୍ରକୋଷ୍ଠ ଶାନ୍ତିକୁଞ୍ଜର ନିର୍ଦ୍ଦେଶାନୁସାରେ ଦେଶର ବିଭିନ୍ନ ଅଞ୍ଚଳକୁ ଯାଇ ଯୁବଚେତନା ଶିବିରରେ କାମ କରି ପାରିବା । ଅତିକମ୍‌ରେ ସପ୍ତାହରେ ଗୋଟିଏ ଦିନ ବା ମାସରେ ଚାରଦିଦନ ସମୟଦାନ କରିପାରୁଥିବା ଯୁବକଙ୍କୁ

ଏହି ଶୃଙ୍ଖଳାରେ ମିଶାଇବା । ଧୀରେ ଧୀରେ ନିଜର ସମୟ ଦାନର ସୀମା ବଢ଼ାଇବା । ବିଦେଶ ମାଟି ଉପରେ ବି ୨୦୦୨ ମସିହାରୁ ଯୁବ ଅନ୍ଦୋଳନ ଚାଲୁ ରହିଛି । ପ୍ରତିବର୍ଷ ସେଠାରେ ଯୁବଶିବିର ହେଉଛି । ଯେଉଁଥିରେ ବିଶ୍ୱର ବହୁସଂଖ୍ୟକ ଯୁବବର୍ଗ ପ୍ରଭାବିତ ହେଉଛନ୍ତି । ଆମେ ସେହି ଶିବିରଗୁଡ଼ିକରେ ଉପସ୍ଥିତ ହୋଇ ମାର୍ଗଦର୍ଶନ ଦେଉଛୁ । ଆଜି ସେହି ଯୁବକ-ଯୁବତୀମାନେ ଚାକିରି ଭିତରେ ରହି, ବିବାହିତ ଜୀବନଯାପନ କରି ବି ନିଜର ସମୟ ଦାନ ପ୍ରତିମାସରେ କରିପାରୁଛନ୍ତି । କାଲିଫର୍ଣ୍ଣିଆର ଯୋସେମାଇଟ୍‌ର ପ୍ରାକୃତିକ ବାତାବରଣରେ ୨୦୧୨ ମସିହାରେ ଆୟୋଜିତ ଶିକ୍ଷକ ତାଲିମରେ ୪୦ଜଣ ଯୁବକ ଅଂଶଗ୍ରହଣ କରିଥିଲେ । ସେମାନେ ଏବେ କେତେଗୁଣ ବଢ଼ିଯାଇ ସମଗ୍ର ଆମେରିକା, କାନାଡ଼ାରେ ଯୁବଶିବିରର ଆୟୋଜନ କରି ପାରିଛନ୍ତି । ଏମିତି କିଛି ଗାୟତ୍ରୀ ପରିବାରର ଯୁବଗୋଷ୍ଠୀ (GPYG) ମାନଙ୍କଦ୍ୱାରା ଭାରତର ମହାନଗରୀ ଗୁଡ଼ିକରେ ବି ବିଗତ ଦଶବର୍ଷରୁ ଏହା ଚାଲି ଆସୁଛି । ପ୍ରବାସୀ ଯୁବକମାନଙ୍କର ମୁଖ୍ୟ କାର୍ଯ୍ୟ ହେଲା-

କ. ନିଜ ଅଞ୍ଚଳରେ ଯୁବଚେତନା ଶିବିର ସ୍ଥାପନା

ଖ. ସପ୍ତାହରେ ଉପଲବ୍ଧ ଦିନ ଯଥା-ରବିବାର ଦିନ ଯୁବକମାନଙ୍କ ଉଦ୍ଦେଶ୍ୟରେ ବିଦ୍ୟାଳୟ, ମହାବିଦ୍ୟାଳୟ, କର୍ପୋରେଟ, ଗ୍ରାମ, ହଷ୍ଟେଲ, ଟ୍ରେନିଂ ସଂସ୍ଥାନରେ କାର୍ଯ୍ୟକ୍ରମ ଓ କର୍ମଶାଳାର ଆୟୋଜନ ।

ଗ. ଯୁବମଣ୍ଡଳୀର ଗଠନ ଏବଂ ଶାନ୍ତିକୁଞ୍ଜରେ ସେମାନଙ୍କ ପଞ୍ଜିକରଣ ।

ଘ. ବାଳ ସଂସ୍କାରଶାଳା ଗୁଡ଼ିକର ସଞ୍ଚାଳନ ।

ଙ. ଯୋଗକେନ୍ଦ୍ର ଦ୍ୱାରା ସ୍ୱାସ୍ଥ୍ୟ ସଂବର୍ଦ୍ଧନ କାର୍ଯ୍ୟକ୍ରମ ବିଭିନ୍ନ ସ୍ଥାନରେ ଆୟୋଜନ ।

ଚ. ଆଦର୍ଶଗ୍ରାମ ଚୟନ ଏବଂ ନ୍ୟୁନତମରୁ ଆରମ୍ଭ କରି ପୂରା କରିବା ।

ଛ. ବୃକ୍ଷଗଙ୍ଗା ଅଭିଯାନ, ଭାଗୀରଥୀ ଜଳାଭିଷେକ, ଶ୍ରୀରାମ ସ୍ମୃତି ଉପବନ, ଶ୍ରୀରାମ ସ୍ମୃତି ସରୋବର ଏବଂ ଆଦର୍ଶଗ୍ରାମ ଅଭିଯାନ ସହ ସମସ୍ତଙ୍କୁ ପରିଚୟ କରାଇବା ।

ଜ. ଦେବସଂସ୍କୃତି ବିଶ୍ୱ ବିଦ୍ୟାଳୟର ସଂପୂର୍ଣ୍ଣ ସୂଚନା ସମସ୍ତ ବିଦ୍ୟାଳୟ, ମହାବିଦ୍ୟାଳୟ ଓ ବିଶ୍ୱ ବିଦ୍ୟାଳୟରେ ପ୍ରଦାନ କରିବା । ପ୍ରବେଶ ପ୍ରକ୍ରିୟାର ବିଧିକୁ ବୁଝାଇବା । ଭବିଷ୍ୟତରେ ଅନ୍ୟ ରାଜ୍ୟରେ ଖୋଲାଯିବାକୁ ଥିବା ବିଶ୍ୱ ବିଦ୍ୟାଳୟ ସଂପର୍କରେ ସୂଚନା ପ୍ରଦାନ କରିବା ।

ଝ. ମିଶନର ଆଧାରଭୂତ କାର୍ଯ୍ୟ ଯଥା ଜନ୍ମଦିବସ, ବିବାହ ଦିବସ, ଯଜ୍ଞ, ସଂସ୍କାର, ଦୀପଯଜ୍ଞ, ଅସ୍ଥାୟୀ ପୁସ୍ତକାଳୟ ଇତ୍ୟାଦିର ସଞ୍ଚାଳନ ।

ଞ. ଶାନ୍ତିକୁଞ୍ଜ ହରିଦ୍ୱାର, ଗାୟତ୍ରୀ ତପୋଭୂମି ମଥୁରା ଏବଂ ଯୁଗତୀର୍ଥ ଆମଲଖେଡ଼ାରେ ଚାଲୁଥିବା ବିଶେଷ ସାଧନା ପ୍ରଧାନ ଏବଂ ଆନ୍ଦୋଳନ ପ୍ରଧାନ ଅଧିବେଶନ ସଂପର୍କରେ ସୂଚନା ପ୍ରଦାନ କରିବା ।

ଟ. ଆଦର୍ଶ ବିଦ୍ୟାର୍ଥୀ କର୍ମଶାଳା-ସ୍କୁଲ, କଲେଜରେ ଆୟୋଜନ । ଏଥିରେ ଶିକ୍ଷା ଏବଂ ବିଦ୍ୟାର କାର୍ଯ୍ୟର ସାର୍ଥକ ସମନ୍ୱୟ, ଶିକ୍ଷଣ ସହିତ ରଚନାତ୍ମକ ଗତିବିଧି ନୈତିକ ଶିକ୍ଷା, ସମୟ ପ୍ରବନ୍ଧନ, ଉତ୍ତେଜନା ପ୍ରବନ୍ଧନ, ସଂସାଧନ ପ୍ରବନ୍ଧନ, ବୁଦ୍ଧି ବୃଦ୍ଧିର ବୈଜ୍ଞାନିକ ବିଧି, ସେବା ଭାବନା ବିସ୍ତାର ଉଦ୍ଦେଶ୍ୟରେ ଶ୍ରମଦାନ, ଜୀବନ ଜୀଇଁବାର କଳା, ସମାଜ ନିର୍ମାଣର ବିଭିନ୍ନ ପ୍ରୟୋଗ ପ୍ରଭୃତି କାର୍ଯ୍ୟକ୍ରମର ଆୟୋଜନ କରାଯିବା । ଏଥିପାଇଁ ସମଗ୍ର ଶିକ୍ଷଣ ସାମଗ୍ରୀ ଶାନ୍ତିକୁଞ୍ଜରୁ ମଗାଇ ନିଆଯାଇପାରେ ।

ଠ. **ଆଦର୍ଶ ଶିକ୍ଷକ କର୍ମଶାଳା**- ଅଧ୍ୟାପକମାନଙ୍କ ପାଇଁ ଶିକ୍ଷଣ-କର୍ମଶାଳା । ଏମାନେ ହେଲେ- ଯୁଗ ନିର୍ମାତା । ଯେଉଁମାନେ ରାଷ୍ଟ୍ରର ଭାଗ୍ୟ ବିଧାତା ଛାତ୍ର ଛାତ୍ରୀମାନଙ୍କୁ ନିର୍ମାଣ କରୁଛନ୍ତି । ସେମାନଙ୍କଠାରୁ କ'ଣ କ'ଣ ଶିଖିବା ଉଚିତ୍, ଏକଥା ଶତ ସୂତ୍ରୀ ଯୁଗନିର୍ମାଣ ଯୋଜନା ମାଧ୍ୟମରେ ବୁଝି ହେବ । ଶିକ୍ଷଣର ଗତିବିଧି ଆଜିର ଏକବିଂଶ ଶତାବ୍ଦୀରେ ଅତି ଦ୍ରୁତ ଗତିରେ ବଦଳିବାରେ ଲାଗିଛି । ଏହାର ବିସ୍ତୃତ ସୂଚନା ପ୍ରବାସୀ ଯୁବକମାନେ ବୁଝାଇବେ ।

ଡ. **ଯୁବକ୍ରାନ୍ତି ପଥ**- ଉତିଷ୍ଠମ୍ ଜାଗ୍ରତ ଏବଂ ଆମର ସପ୍ତ ଆନ୍ଦୋଳନରେ ସ୍ୱୟଂ ସ୍ୱାଧ୍ୟାୟ ଏବଂ ଏହାର ପ୍ରଚାର-ପ୍ରସାର । ପ୍ରତ୍ୟେକ ସ୍ଥାନରେ

ଏହାର ମହତ୍ୱକୁ କୁହାଯିବ । ଏହିବର୍ଷ ଯୁବକ୍ରାନ୍ତି ପଥର ଦ୍ୱିତୀୟ ଭାଗ ବି ପ୍ରକାଶିତ ହେବାର ସମ୍ଭାବନା ରହିଛି । ସେଥିରୁ ଯୁବ ଆନ୍ଦୋଳନ ଆହୁରି ବିରାଟ ରୂପ ନେଇପାରିବ ।

ଢ଼. **ଗ୍ରାମୀଣ କ୍ଷେତ୍ର ଉଦ୍ଦେଶ୍ୟରେ କାର୍ଯ୍ୟକ୍ରମ-** ଯୁଗଋଷିଙ୍କର ଗ୍ରାମତୀର୍ଥ ଯୋଜନାକୁ ଜନସାଧାରଣରେ ଲୋକପ୍ରିୟ କରାଇବା, ଗ୍ରାମୀଣ ସ୍ତରରେ ସ୍ୱଚ୍ଛତା ଅଭିଯାନ, ଗ୍ରାମ ସ୍ୱାବଲମ୍ବନ, ଗୋ କେନ୍ଦ୍ରିତ ଅର୍ଥ ବ୍ୟବସ୍ଥାର ନିରୂପଣ, ପଞ୍ଚ ମହାଅଭିଯାନ ଏବଂ ଆମର ସପ୍ତ ଆନ୍ଦୋଳନ, ବ୍ୟସନ ମୁକ୍ତିରୁ ଉତ୍ପନ୍ନ ହେଇଥିବା ଲାଭର ସୂଚନା ତଥା ଗ୍ରାମୀଣ କ୍ଷେତ୍ରରେ ଥିବା ସ୍କୁଲଗୁଡ଼ିକ ଉଦ୍ଦେଶ୍ୟରେ ନିର୍ଦ୍ଧାରିତ କାର୍ଯ୍ୟକ୍ରମ, ଖେଳକୁଦ, ଖେଳ ମହାକୁମ୍ଭ ଇତ୍ୟାଦିର ସଞ୍ଚାଳନ ।

୩. **ଦିବ୍ୟତା ଜାଗରଣ କର୍ମଶାଳା** (ଡ଼ିଭାଇନ୍ ୱାର୍କସପ୍) ଏହା ହେଉଛି- ଆମର ଯୁବଜାଗୃତି ଅଭିଯାନର ଏକ ମୁଖ୍ୟ ଅଙ୍ଗ । ଯୁବକମାନଙ୍କୁ ଯେତେବେଳେ ଉପଯୁକ୍ତ ମାର୍ଗଦର୍ଶନ ନ ମିଳେ, ସେମାନେ ବିଭ୍ରାନ୍ତ ହୁଅନ୍ତି । ନିଜକୁ କେବଳ ଗୋଟାଏ ଦେହଧାରୀ ମଣିଷଭାବି ଦେଲେ ସେମାନେ ଏଭଳି ସ୍ଥିତିରେ ପହଞ୍ଚନ୍ତି । ଆମେ ଶରୀରଠାରୁ ଅନେକ ବଡ଼ ଆତ୍ମା, ବଳବାନ ଆତ୍ମା ଯାହା ପରମାତ୍ମାଙ୍କର ଏକ ଅଂଶ । ତାକୁ କଦାପି ଅବସାଦଗ୍ରସ୍ତ କରିବା ଉଚିତ ନୁହେଁ । କେବେ ବି ଯୁବକ ଅବସ୍ଥାରେ କେହି ନିରାଶ ହେବା ଉଚିତ ନୁହେଁ । ଉଦ୍ଧେରତ୍ ଆତ୍ମାନମ୍ ନାତ୍ମାନମ୍ ଅବସାଦୟେତ୍ । ଆତ୍ମୈବହି ଆତ୍ମନୋବନ୍ଧୁ, ଆତ୍ମୈବ ରିପୁ ଆତ୍ମନଃ ।(ଗୀତା୬/୫)

ମନକୁ ମିତ୍ର କରନ୍ତୁ, ଶତ୍ରୁ ନୁହେଁ । ଏହା ଧ୍ୟାନରେ ରହିଲେ, କେବେ ବି ନିରାଶା ପାଖକୁ ଆସିପାରିବ ନାହିଁ ।

ଯୁବକମାନଙ୍କୁ ମାର୍ଗଦର୍ଶନ କରିବାପାଇଁ ଏବଂ ତାଙ୍କର ମାନସିକ ଶକ୍ତିକୁ ବଢ଼ାଇବା, ମନୋବଳକୁ ସଂବର୍ଦ୍ଧନ ଓ ଶଙ୍କା ନିବାରଣ ଉଦ୍ଦେଶ୍ୟରେ ବିଭିନ୍ନ କର୍ମଶାଳାକୁ ସଞ୍ଚାଳିତ କରାଯିବାର ଅଛି । ଏଥିରୁ ଦିବ୍ୟତାକୁ ଆପଣେଇବାର ଶପଥ ଗ୍ରହଣ କରିବାକୁ ହେବ । ଦିବ୍ୟତା ସହିତ କିପରି ଯୋଡ଼ିହେବ, ଦିବ୍ୟ ସଂଦେଶ, ସଂଗୀତ, ଗୀତର ପ୍ରଚାର ପ୍ରସାର କେମିତି ହେଇପାରିବ, ଏହାର ମଧ୍ୟ ତାଲିମ

ଦିଆଯାଉଛି । ଏଥିପାଇଁ ଗୋଟିଏ କାର୍ଯ୍ୟ ଯୋଜନା ବିଭିନ୍ନ କର୍ମଶାଳା ମାଧ୍ୟମରେ ବୁଝାଇ ଦିଆଯାଉଛି । ଏଗୁଡ଼ିକ କର୍ମଶାଳାରେ ଥାଏ ।

୧. ମାନବ ଜୀବନର ଗରିମା ।

୨ ମାନବୀ ଉତ୍କୃଷ୍ଟତା ।

୩. ଉତ୍ତେଜନା ପ୍ରବନ୍ଧନ ।

୪. ସମୟ ପ୍ରବନ୍ଧନ ।

୫. ଜୀବନ ସାଧନାର ସ୍ୱର୍ଣ୍ଣିମ ସୂତ୍ର ।

୬. ବ୍ୟକ୍ତିତ୍ୱ ପରିଷ୍କାର କାର୍ଯ୍ୟ ଯୋଜନା ।

୭. ବୈଜ୍ଞାନିକ ଆଧ୍ୟାତ୍ମବାଦ କାହିଁକି ?

୮ ଗ୍ରାମ ପ୍ରବନ୍ଧନ ।

୯ କର୍ପୋରେଟ ଔଦ୍ୟୋଗିକ ଜଗତର ସ୍ତର ଉପରେ କାର୍ଯ୍ୟକ୍ଷମତାରେ ଦିବ୍ୟତାର ସମାବେଶ ।

୧୦. ସମଗ୍ର ସ୍ୱାସ୍ଥ୍ୟ ପ୍ରବନ୍ଧନ ।

୧୧ ଯୋଗ ଏବଂ ପ୍ରବନ୍ଧନ ।

୧୨ ଜୀବନ ଜୀଇଁବାର କଳା ଯାହା ଆଧ୍ୟାତ୍ମ୍ୟର ପର୍ଯ୍ୟାୟବାଚୀର ବିଧିବଦ୍ଧ ପ୍ରଶିକ୍ଷଣ । ଏହା କୌଣସି ଗୋଟାଏ କ୍ରିୟା ନୁହେଁ । ଏହା ହେଉଛି- ଚବିଶ ଘଣ୍ଟିଆ ଜୀବନଶୈଳୀ । ଯାହାର ଅଭ୍ୟାସ ଜୀବନକୁ ଦିବ୍ୟ କରିଦିଏ । ଏହା ଉପରେ ଆଧାରିତ କର୍ମଶାଳା ବସ୍ତୁତଃ ଜୀବନକୁ ବଦଳାଇ ଦେଇଥାଏ ।

ବିଶେଷତଃ ସ୍ୱାବଲମ୍ବନ, ଗୋ କେନ୍ଦ୍ରିତ ଅର୍ଥ ବ୍ୟବସ୍ଥା, ସ୍ୱାଲୋକମ୍ ଯୋଜନା, ପଞ୍ଚ ମହାଅଭିଯାନ, ଭିଡ଼ିଓ ରଥର କାର୍ଯ୍ୟ ଯୋଜନା, ଯୋଗ ବ୍ୟାୟାମ କେନ୍ଦ୍ରଗୁଡ଼ିକୁ ପ୍ରତ୍ୟେକ ଜିଲ୍ଲାରେ ସ୍ଥାପନ, ଯୁବ ଏକ୍ସପୋ, କବି ସମ୍ମିଳନୀ, "ଦିୟା" ଓ ସେଥି ସହିତ ଯୋଡ଼ି ହେବାର ପ୍ରକ୍ରିୟା, ସଂଗୀତ ସନ୍ଧ୍ୟା, ଯୁଗପ୍ରବକ୍ତା ଏବଂ ପାରିବାରିକ ଯୁବ ସମ୍ମିଳନଗୁଡ଼ିକ ସଂପର୍କରେ ସୂଚନା ପ୍ରଦାନ କରାଯାଇ ପାରିବ ।

ଆମେ ଚାହୁଁ, ପାଠକଗଣ ଯିଏ ନିଜକୁ ଯୁବକ ମନେ କରନ୍ତି, ଯେଉଁମାନେ ଯୁବକମାନଙ୍କ ସହିତ ଅଛନ୍ତି, ସେମାନେ ଯୁବକମାନଙ୍କ ସେମାନଙ୍କୁ ସହଯୋଗ କରନ୍ତୁ । ଆମମାନଙ୍କ ସହିତ ପତ୍ରାଳାପ ଦ୍ୱାରା ଯୋଡ଼ି ହୋଇଯାଆନ୍ତୁ । ଏହି ଲେଖା ମାଧ୍ୟମରେ ପ୍ରଦାନ କରାଯାଇଥିବା ସାମଗ୍ରୀ ସଂପର୍କରେ ପଢ଼ନ୍ତୁ । ଆପଣଙ୍କ ମନରେ ଯଦି କୌଣସି ଜିଜ୍ଞାସା ରହିଛି, ତାହା ମଧ୍ୟ ଲେଖି ଜଣାନ୍ତୁ । ତାର ସମାଧାନ ଏଠାରେ କରାଯିବ । କିଛି ଯୁବ କେନ୍ଦ୍ରିୟ ବା ଆଞ୍ଚଳିକ ସ୍ତରରେ ଦୀର୍ଘ ସମୟ ସମୟ ଦାନ କରିବାକୁ ଚାହୁଁଥିଲେ, ସେମାନେ ପ୍ରଥମେ ଗୋଟିଏ ମାସ ଯୁଗଶିଳ୍ପୀ ଶିବିରକୁ ଆବେଦନ କରି ଅନୁମତି ଗ୍ରହଣ କରନ୍ତୁ । ପୁଣି ନିଜର ପ୍ରାର୍ଥିତ୍ୱ ଏଠାରେ ସିଦ୍ଧ କରିନେବେ । ଉପଯୋଗୀ ମନେହେଲେ, ପୁଣି ସମୟ ଦାନ କରନ୍ତୁ । ଏପରି ନ ହେଉ କି ସ୍ୱୟଂ ବା ପରିବାର ସହିତ- ଜିନିଷପତ୍ର ସହିତ ବିନା ଅନୁମତିରେ ଏଠାରେ ଆସି ପହଞ୍ଚିଯିବେ । ଏଠାରେ ସୀମିତ ସ୍ଥାନ ରହିଛି । ବିଭିନ୍ନ ପ୍ରାନ୍ତରେ ନିଜ ଆନ୍ଦୋଳନର ପ୍ରଗତିର ଅନନ୍ତ ସମ୍ଭାବନା ରହିଛି । ତା'ର ଉପଯୋଗ ଯେ କୌଣସି ସ୍ଥାନରେ କରାଯାଇପାରେ । ଏହିବର୍ଷ ଅନୁଦାନର ସୌଭାଗ୍ୟ ଉପହାର ନେଇଆସିଛି । ଏହା ହେଉଛି ମହାମାନବଙ୍କର ହୀରକ ରୂପରେ ଯୁଗ ଦେବତାଙ୍କ ଚରଣରେ ସମୟ ଦାନ । ନିଜକୁ ସାମାନ୍ୟ ମାନବରୁ ମହାମାନବ କରିବାକୁ ଚାହାନ୍ତି ତ ଅଣ୍ଟାଭିଡି ନିଜର ଯୁବଶୌର୍ଯ୍ୟକୁ ପ୍ରକାଶ କରନ୍ତୁ । ନିଜେ ନିଜକୁ ବଳବାନ କରାନ୍ତୁ । ଉପର ଲିଖିତ କଷଟିରେ ନିଜେ ଆଗ କଷିହୋଇ ସ୍ଥାନୀୟ ସ୍ତରରେ ସକ୍ରିୟଭାବେ ଲାଗି ରୁହନ୍ତୁ । ଯୁଗ ଦେବତା ମହାକାଳ ଆପଣଙ୍କୁ ପ୍ରତୀକ୍ଷା କରି ରହିଛନ୍ତି ।



# ମହାକାଳଙ୍କ ଆଶା ଓ ଅପେକ୍ଷା

ଶତସୂତ୍ରୀ ଯୁଗନିର୍ମାଣ ଯୋଜନାର ସମସ୍ତ ବିନ୍ଦୁ ଉପରେ ଦୃଷ୍ଟି ପକାଇଲେ, ଜଣା ପଡ଼ିବ ଯେ, ସେମାନଙ୍କ ମଧ୍ୟରୁ ଷାଠିଏ ପ୍ରତିଶତ ହିଁ ଯୁବକମାନଙ୍କ ପାଇଁ ଗୁରୁସତ୍ତା ନିୟୋଜିତ କରିଛନ୍ତି । "ଯୁବକ" ସେହିମାନେ ଯିଏ ଉତ୍ସାହର ସହିତ ଲାଗି ରହନ୍ତି । ସକାରାତ୍ମକତା ଯାହାର ଚିନ୍ତନର ବିଶେଷତା ଏବଂ ନିରନ୍ତର ଗୁରୁକାର୍ଯ୍ୟରେ ଲାଗି ରହିବାରେ ପସନ୍ଦ ଥାଏ ।

## ଯୋଗକୁ ସମସ୍ତ ପାଖରେ ପହଞ୍ଚାଇବା

ସମସ୍ତେ ଜାଣନ୍ତି ଯେ ଯୋଗର କ୍ଷେତ୍ର ବିଗତ ସତୁରି ବର୍ଷରୁ ଗାୟତ୍ରୀ ପରିବାର ସକ୍ରିୟ ରହିଛି । ପୂଜ୍ୟବର ଶ୍ରୀଗୁରୁଦେବ ଏହାକୁ ୧୯୫୦ ମସିହାରୁ ହିଁ ସମସ୍ତଙ୍କ ପାଖରେ ପହଞ୍ଚିବା ଉଦ୍ଦେଶ୍ୟରେ ଅଖଣ୍ଡଜ୍ୟୋତି ପତ୍ରିକାଦ୍ୱାରା ଏହାକୁ ପ୍ରଚଳିତ କରିବା ଆରମ୍ଭ କରିଦେଇଥିଲେ । କେତୋଟି ଶିବିର ଗାୟତ୍ରୀ ତପୋଭୂମି ମଥୁରା ଏବଂ ପରେ ଶାନ୍ତିକୁଞ୍ଜ ହରିଦ୍ୱାରରେ ଆୟୋଜିତ କରିଥିଲେ । ଯୋଗ ଏହି ଦେଶର କୋଣ ଅନୁକୋଣରେ ବସାବାନ୍ଧି ରହିଛି, କିନ୍ତୁ ଗାୟତ୍ରୀ ପରିବାରର ଯୁବଶକ୍ତି ଏହାକୁ ବୈଜ୍ଞାନିକ ଢ଼ଙ୍ଗରେ ଜଣଙ୍କଠାରୁ ସମସ୍ତଙ୍କ ପର୍ଯ୍ୟନ୍ତ ପହଞ୍ଚାଇଛନ୍ତି । ଏବେ ବି ପାଖାପାଖି ଏକଲକ୍ଷ ସ୍ଥାନରେ ଏକସଂଗେ ପ୍ରତିଦିନ ପ୍ରାତଃରେ ଯୋଗ ବ୍ୟାୟାମରୁ ଆରମ୍ଭକରି ଜୀବନରେ ପ୍ରଜ୍ଞାଯୋଗ ସାଧନା ସମାବେଶର ପ୍ରକ୍ରିୟା ସଂପନ୍ନ ହୋଇଥାଏ । ଏହି ଯୋଗଦିବସକୁ ବି ଏହିପରି ଭାବେ ପାଳନ କରିବାକୁ ହେବ । ଏହି ସମ୍ବନ୍ଧରେ ପ୍ରଚୁର ମାତ୍ରାରେ ସାହିତ୍ୟ ଲେଖା ଯାଇଛି । ଭାରତବର୍ଷରେ ପାଶ୍ଚାତ୍ୟକରଣ କରିବା ଦିଗରେ ଆକ୍ରମଣ ଏବଂ ବହୁରାଷ୍ଟ୍ରୀୟ କରଣର ଧୂଆଁରେ ଜନସ୍ୱାସ୍ଥ୍ୟ ବିଗିଡ଼ି ଯାଉଛି । ମଧୁମେହ, ମେଦ ବହୁଳତା, ଉଚ୍ଚ ରକ୍ତଚାପ, ନିଦ୍ରା ସମ୍ବନ୍ଧୀ ରୋଗ ଦ୍ରୁତ ଗତିରେ ବଢ଼ି ଚାଲିଛି । ଏହାଦ୍ୱାରା ଜୀବନ ଶୈଳୀର ପରିବର୍ତ୍ତନ ସହିତ ନିଜର ଶକ୍ତି ସାମର୍ଥ୍ୟ

ବଳରେ ପରିସ୍ଥିତିର ସମ୍ମୁଖୀନ ହେବାପାଇଁ ବିଭିନ୍ନ ସ୍ଥାନରେ ଯୋଗକୁ ଯୋଡ଼ି ଦିଆଯାଉଛି । ଏହି କ୍ରମ ୨୦୧୬ ମସିହା ଜୁନ ମାସରୁ ଆରମ୍ଭ ହୋଇ ପୂରା ବର୍ଷଯାକ ଚାଲିବ ।

ଆମର ଦେବସଂସ୍କୃତି ବିଶ୍ୱ ବିଦ୍ୟାଳୟରୁ ବିଗତ ୧୪ବର୍ଷ ମଧ୍ୟରେ (୨୦୦୨ ମସିହାରେ ପ୍ରତିଷ୍ଠିତ) ଯୋଗର ବିଭିନ୍ନ ଧାରାରେ ପ୍ରବୀଣ ଦଶ ହଜାର ଯୁବକ ଭାରତ ଓ ବିଶ୍ୱର ବିଭିନ୍ନ ସ୍ଥାନରେ ପହଞ୍ଚି ସାରିଛନ୍ତି । ପ୍ରାୟ ୧୨୫ଜଣ Ph.D ଡକ୍ଟରେଟ୍ ମଧ୍ୟ କରିସାରିଛନ୍ତି । ସେମାନେ ଭାରତ ସରକାରଙ୍କର ବିଭିନ୍ନ ପ୍ରକଳ୍ପ, ଦୂତାବାସ ଓ ବିଦେଶରେ ଶିକ୍ଷାଦାନ ପାଇଁ ଯୋଗକୁ ସ୍ଥାପିତ କରିଛନ୍ତି । କେତେଜଣ ନିଜର ଯୋଗ କ୍ଲିନିକ୍ ବି ଖୋଲି ଚଳାଇ ରଖିଛନ୍ତି । ଏଥିରେ ସେମାନଙ୍କୁ ଭଲ ସଫଳତା ମଧ୍ୟ ମିଳୁଛି । ଆର୍ଥିକ ଦୃଷ୍ଟିରୁ ହେଉକି, ପରିଣାମ ଦୃଷ୍ଟିରୁ ହେଉ, ସେମାନେ ବେଶ୍ ସଫଳତା ପାଇଛନ୍ତି । ଏଥିରୁ ଆଭାସ ମିଳୁଛି କି କେତେ ଦୂରଦୃଷ୍ଟି ରହିଛି, ଗୁରୁସତ୍ତାରେ । ଏହି ଯୋଗର ଶକ୍ତି କେତେ ? ଏହାଦ୍ୱାରା ଦେବସଂସ୍କୃତି ମହାବିଦ୍ୟାଳୟ (୨୦୦୧-୨୦୦୨) ଖୋଲାଯାଇଥିଲା ଓ ସେଠାରେ ପୁଣି ବିଶ୍ୱ ବିଦ୍ୟାଳୟ ହେଇଗଲା । ଏବେ ବିଭିନ୍ନ ପ୍ରାନ୍ତରେ ଯୋଗ ବିଶ୍ୱ ବିଦ୍ୟାଳୟର ପ୍ରକଳ୍ପ ଖୋଲିବାର ସମ୍ଭାବନା ପ୍ରବଳ ହେବାରେ ଲାଗିଛି । ନିଶ୍ଚିତ ଭାବେ ଏଥିରୁ ଯୁବକମାନଙ୍କ ମଧ୍ୟରେ ଯୋଗକୁ ଗୋଟାଏ ବୃତ୍ତି ଭାବରେ ଗ୍ରହଣ କରିବାର ସୁଯୋଗ ସୃଷ୍ଟି ହେବ । ମାତ୍ର ଛଅମାସର ଯୋଗ ପ୍ରମାଣପତ୍ର କୋର୍ସ ବି ଏତେ ସକ୍ଷମ କରିଦେଇପାରେ ଯେ, ଯାହାକୁ କେହି କେବେ କଳ୍ପନା ବି କରିପାରୁ ନ ଥିଲେ ।

## ଆମର ଚାରି ତେଜସ୍ୱୀ ଉଦ୍‌ଘୋଷ

ଆମକୁ ଯୋଗବର୍ଷର ବିସ୍ତୃତ ସୂଚନା ସହିତ ଆସିବ । ସେଥିରେ ବିସ୍ତାରିତ ଭାବେ ଏ' ସଂପର୍କରେ ଚର୍ଚ୍ଚା କରାଯିବ । ଏବେ ତ ଆମେ ଯୁବକ୍ରାନ୍ତି ବର୍ଷରେ ଯୁବ ଆନ୍ଦୋଳନ ସହିତ ଯୋଡ଼ି ହୋଇଥିବା ଚାରି ତେଜସ୍ୱୀ ଆହ୍ୱାନକୁ ବିସ୍ତାରକରି ବୁଝାଇବାକୁ ପ୍ରୟାସ କରୁଛୁ । ସେଗୁଡ଼ିକ ହେଲା–

୧. ସ୍ୱସ୍ଥ ଯୁବା – ସବଳ ରାଷ୍ଟ୍ର

୨. ଶାଳୀନ ଯୁବା – ଶ୍ରେଷ୍ଠ ରାଷ୍ଟ୍ର

୩. ସ୍ୱାବଲମ୍ବୀ ଯୁବା – ସଂପନ୍ନ ରାଷ୍ଟ୍ର

୪. ସେବାଭାବୀ ଯୁବା - ସୁଖୀ ରାଷ୍ଟ୍ର

ଆଜିର ଯୁବକ-ଯୁବତୀମାନଙ୍କୁ ଈଶ୍ୱରମୁଖୀ କରିବାପାଇଁ, ରାଷ୍ଟ୍ର ପ୍ରତି ନିଜର ସମର୍ପଣ ଭାବ ବୃଦ୍ଧି ପାଇଁ ସମସ୍ତ ପ୍ରକାର ସୂତ୍ର ଏଥିରେ ପ୍ରକାଶିତ ହେଇଛି ।

**ସ୍ୱସ୍ଥ ଯୁବା-** ଏବେ ଯୋଗ ସଂପର୍କରେ ଚର୍ଚ୍ଚା ଚାଲିଛି । ଯୋଗସୂତ୍ରରେ ବିଷୟ କୁହାଯାଇଛି- (ଅଥଃ ଯୋଗାନୁଶାସନମ୍) ଅର୍ଥାତ୍ ଯଦି ଜୀବନରେ ଅନୁଶାସନ ରହିଛି, ପ୍ରତ୍ୟେକ କ୍ରିୟାକଳାପ ଠିକ୍ ସମୟରେ ହେଇଯିବ । ଖାଇବା, ପିଇବା ଓ ଶୋଇବା ନିୟନ୍ତିତ ହେବ । ଶୋଇବା ଓ ଉଠିବା ବ୍ୟବସ୍ଥିତ ଭାବରେ ଚାଲିବା ଉଚିତ । ଫଳରେ କୌଣସି ରୋଗ ଆକ୍ରମଣ କରିବାର ସୁଯୋଗ ନଥିବ । ପରମପୂଜ୍ୟ ଗୁରୁଦେବ ଯୁଗନିର୍ମାଣର ଯିଏ କି ପ୍ରାଥମିକ ସୂତ୍ର ଦେଇଛନ୍ତି, ସେଥିରେ ପ୍ରଥମେ ରହିଛି- ସୁସ୍ଥ ଶରୀର । 'ସ୍ୱ'ରେ ସ୍ଥିତ ହେଲେ ତାହା **ସ୍ୱସ୍ଥ** ହୁଏ । ଯାହା ଯୋଗରେ ସ୍ଥିତ ହୁଏ, ତାହା **ଯୋଗସ୍ଥ** । ଆମକୁ ଏଇ ଶବ୍ଦକୁ ବୁଝିବାକୁ ହେବ । କାୟାକୁ ଧର୍ମ ସାଧନା ଉଦ୍ଦେଶ୍ୟରେ ଆଧାରଭାବେ ଗ୍ରହଣ କରାଯାଏ । **"ଶରୀରମାଦ୍ୟମ୍ ଖଳୁ ଧର୍ମ ସାଧନମ୍ ।"** ଶରୀରକୁ ଯୁଗ ନିର୍ମାଣର ସୂତ୍ରରେ ଭଗବାନଙ୍କ ମନ୍ଦିର କୁହାଯାଏ । ତେବେ ଏହି ମନ୍ଦିରକୁ ରକ୍ଷା କରିବା କର୍ତ୍ତବ୍ୟ କାହାର ? ଏଥିପାଇଁ **ସ୍ୱସ୍ଥ ଯୁବା-ସବଳ ରାଷ୍ଟ୍ର** ବୋଲି ଆହ୍ୱାନ ଦିଆଯାଇଛି । ଯେଉଁ ରାଷ୍ଟ୍ରରେ ସ୍ୱସ୍ଥ ଯୁବକ-ଯୁବତୀ ଅଛନ୍ତି, ତାଙ୍କୁ କୌଣସି ଶକ୍ତି ପରାଜିତ କରିପାରିବ ନାହିଁ । ନା-ଅଶ୍ଳୀଳତା, ନା-ନିଶା, ନା-ବିଦେଶୀ ଆକ୍ରମଣ, ନା-ନକରାତ୍ମକତା । ତେଣୁ ଆମକୁ ଶାରୀରିକ, ମାନସିକ, ଆଧ୍ୟାତ୍ମିକ ଫିଟ୍‌ନେସ ଉପରେ ପ୍ରଥମରୁ ଧ୍ୟାନ ଦେବାକୁ ହେବ । ପୁଣି ଏହି ସବଳ ରାଷ୍ଟ୍ର ଆଗାମୀ ଦଶବର୍ଷ ମଧ୍ୟରେ ନିଜର ଯୁବଶକ୍ତିର ତେଜ ଜଗଦ୍‌ଗୁରୁ ହେବାର ଘୋଷଣା ସମୟ ଆସିବା ପୂର୍ବରୁ ତାକୁ ଦେଖାଇବାକୁ ପଡ଼ିବ । ଗୀତାରେ ଶ୍ରୀକୃଷ୍ଣ ଯୋଗେଶ୍ୱର କହନ୍ତି-

ଯୁକ୍ତାହାର ବହାରସ୍ୟ । ଯୁକ୍ତ ଚେଷ୍ଟସ୍ୟ କର୍ମସୁ ॥
ଯୁକ୍ତସ୍ୱପ୍ନାବବୋଧସ୍ୟ । ଯୋଗୋ ଭବତି ଦୁଃଖଦା ॥(୬/୧୭)

ଅର୍ଥାତ୍- ଦୁଃଖକୁ ନାଶ କରିପାରୁଥିବା ଯୋଗ (ଦୁଃଖହା) ଯଥାଯୋଗ୍ୟ ଆହାର ବିହାର କରୁଥିବା ଲୋକ ଏବଂ ଯଥାଯୋଗ୍ୟ ଶୋଇ ପାରୁଥିବା ତଥା ଜାଗ୍ରତ ହୋଇପାରୁଥିବା ଲୋକ ହିଁ ସିଦ୍ଧ ହୋଇଥାଏ ।

ଯୋଗ ମାତ୍ର ବ୍ୟାୟାମ ନୁହେଁ, ଏକ ଜୀବନପଦ୍ଧତି । ଯେଉଁଥିରେ ଆହାର ବିହାର, ସଂଯମାଦି, ଯମ-ନୀୟମ, ଦିନସାରାର କାର୍ଯ୍ୟ-ତାଙ୍କର ସୋଦ୍ଦେଶ୍ୟତା, ଯଥାଯୋଗ୍ୟ ଶୋଇବା ଏବଂ ଠିକ୍ ସମୟରେ ଉଠିବା ବି ଆସିଥାଏ । ଯିଏ ଏହି ସମଗ୍ର ଭାବରେ ଯୋଗକୁ ବୁଝିବ ସେ ପୂର୍ଣ୍ଣତଃ ସୁସ୍ଥ ରହିବ । ଆଜିର ଯୁବକକୁ ସମଗ୍ର ସ୍ୱାସ୍ଥ୍ୟ (ହୋଲେଷ୍ଟିକ୍ ହେଲ୍‌ଥ)ର ଏହି ପରିଭାଷାକୁ ବି ବୁଝିବାକୁ ହେବ, ଆସନାଦି ପର୍ଯ୍ୟନ୍ତ ସୀମିତ ରହିବା ଲୋକ ଯୋଗ ସ୍ୱାସ୍ଥ୍ୟ ପାଇଁ କିଛି ପ୍ରଥମରୁ ଦିଗହରା ହୋଇଯାଆନ୍ତି । ସୁସ୍ଥ ଯୁବକଙ୍କ ମାଧ୍ୟମରେ ସବଳରାଷ୍ଟ୍ର ତିଆରି କରିବା କଥା ଏବେ ଜୀବନ ପଦ୍ଧତିର ପରିବର୍ତ୍ତନ ମାଧ୍ୟମରେ କରାଯାଇପାରିବ । ପରମପୂଜ୍ୟ ଗୁରୁଦେବଙ୍କଦ୍ୱାରା ପ୍ରଦତ୍ତ ପ୍ରଜ୍ଞାଯୋଗ, ପ୍ରଜ୍ଞା ବ୍ୟାୟାମ ଏବଂ ଜୀବନ ଶୈଳୀ ପରକ ମାର୍ଗଦର୍ଶନ ଏଥିପାଇଁ ଯଥେଷ୍ଟ ହେବ ।

୨. ଶାଳୀନ ଯୁବକ- 'ଯୁବକ'ଙ୍କ ବିଷୟରେ ଯେଉଁଠି କଥା ଉଠେ, ସେଠାରେ ଲାଗେ କି କୌଣସି ଗୋଟାଏ ଗଣ୍ଡଗୋଳିଆ ବିଶ୍ୱ ବିଦ୍ୟାଳୟ ସହିତ ଯୋଡ଼ିହେଇ ରହିଥିବା ରାଜନୈତିକ ଦଳର ଗୁଣ୍ଡାଛାତ୍ର ନୁହେଁ ତ ! ଯୁବକ ମନରେ ସାହସ ଥାଏ, କିଛି କରିଦେଖାଇ ପାରିବାର ସାମର୍ଥ୍ୟ ଥାଏ । ଏଭଳି ସ୍ଥିତିରେ ତାଙ୍କର ସାହସିକ ପ୍ରଦର୍ଶନ, ଆହ୍ୱାନ ଦେବାର ଶୈଳୀ ଇତ୍ୟାଦିକୁ ଦେଖି ଏଭଳି ପ୍ରତୀତ ହେବା ସ୍ୱାଭାବିକ କଥା । ପରମପୂଜ୍ୟ ଗୁରୁଦେବ କହିଛନ୍ତି, ଶାଳୀନତାଦ୍ୱାରା ମୋତି ମିଳେ, ତଦ୍ଦ୍ୱାରା ତା'ଠାରୁ ସବୁକିଛି କିଣା ଯାଇପାରେ । ଶାଳୀନ ଯୁବକ ହିଁ ଗାୟତ୍ରୀ ପରିବାରର ପରିଚୟ । ଯେଉଁମାନେ ବରିଷ୍ଠମାନଙ୍କ ପ୍ରତି ବିନମ୍ରତା ପୂର୍ବକ କଥାବାର୍ତ୍ତା କରନ୍ତି, ତଥା ତାଙ୍କର ଅଭିଭାବକ ତୂଲ୍ୟ ମାର୍ଗଦର୍ଶନ ପ୍ରତି ସ୍ୱୟଙ୍କୁ ଜଣେ ଶ୍ରେଷ୍ଠ କର୍ମକର୍ତ୍ତାଭାବେ ଗଢ଼ିତୋଳନ୍ତି । ଜଣେ ଯୁବକ ନିଜର ଶାଳୀନତା ମିଷ୍ଟାଚାରଯୁକ୍ତ ଜୀବନ ପଦ୍ଧତି ଓ ବିନମ୍ରତାଯୁକ୍ତ ବ୍ୟବହାରଦ୍ୱାରା ପ୍ରତ୍ୟେକଙ୍କୁ ନିଜରକରି ନେଇପାରେ ।

ଏବେ ଯେତେବେଳେ ଆମେ ଯୁବକ୍ରାନ୍ତି ବର୍ଷରେ "ଯୁବାଯୋଦ୍ଧ ଅଭିଯାନ"କୁ ତୀବ୍ର ଗତି ଦେଇଛୁ । ଆମେ ସେମାନଙ୍କୁ ଶାଳୀନତାର ତାଲିମ ପ୍ରଦାନ କରିବା ଦରକାର । ଶାଳୀନତା ଏକ ଶ୍ରେଷ୍ଠତମ ସଦ୍‌ଗୁଣ । ଯାହାଦ୍ୱାରା ଆପଣ ଯେକୌଣସି ଲୋକର ହୃଦୟକୁ ଜିତିପାରିବ । ସଫଳତାପାଇଁ ଏହା ହେଉଛି ପ୍ରଥମ ଶିଢ଼ି । କେହି

ଜଣେ ମଜବୁତ ସୁସ୍ଥ-ସୁଢ଼ଳ ଶରୀରଧାରୀ ହୋଇପାରନ୍ତି, କିନ୍ତୁ ଶାଳୀନତା ତାଙ୍କର ବ୍ୟକ୍ତିତ୍ୱରେ ମୁକୁଟ ଲଗାଇ ଦିଏ । ଏହିପରି ଆମେ ନିଜ ଭିତରୁ ଶାଳୀନ ଯୁବକମାନଙ୍କୁ ଖୋଜି ବାହାର କରବା । ତାଙ୍କୁ ନିଜ ସହିତ ଯୋଡ଼ି ରଖିବାକୁ ହେବ । ଏମିତି ନ ହେଉ କି ଆମକୁ ଶାଳୀନତା ଶିକ୍ଷା ପାଇଁ ପୁଣି ଆମକୁ ତାଲିମକେନ୍ଦ୍ର ଖୋଲିବାକୁ ପଡ଼ିବ । ସେମାନେ କେମିତି ଜଣେ ସଫଳ ମଣିଷରୁ ମହାମାନବ ହେଇପାରିବେ, ଏକଥା ସେମାନଙ୍କୁ ଶିକ୍ଷା ମାଧ୍ୟମରେ ପ୍ରଦାନ କରାଯିବ, ତହିଁର ପ୍ରେରକ ଉଦାହରଣକୁ ପ୍ରଦର୍ଶନ କରି ଅଗଣିତ ଯୁବକଙ୍କୁ ପ୍ରେରଣା ମିଳିପାରିବ ।

ଦୁର୍ଭାଗ୍ୟର କଥା, ଆଜିର ରାଜନୈତିକ ଦଳମାନେ ମହାବିଦ୍ୟାଳୟ ଓ ବିଶ୍ୱ ବିଦ୍ୟାଳୟର ଛାତ୍ର ଛାତ୍ରୀ ସଂଘ ଭିତରେ ପଶି ଯାଉଛନ୍ତି । ସେମାନଙ୍କ ମଧ୍ୟରେ ମହତ୍ୱାକାଂକ୍ଷା ସୃଷ୍ଟିକରି ଦିଆଯାଉଛି । ସେଠାରେ ଶିକ୍ଷା ଦେଉଛନ୍ତି ଯେ, ଯେତେବେଶି ଉଶୃଙ୍ଖଳ ହେଇପାରିବ, ତୁମେ ସେତେ ଶୀଘ୍ର ବଡ଼ନେତା ହୋଇପାରିବ । କେତେଜଣ ବିଶୃଙ୍ଖଳିତ ନେତାଙ୍କର ଉଦାହରଣ ବି ସେମାନେ ଦେଇଛନ୍ତି । ଏପରିକି ନିଜ ଦେଶର ଅସ୍ମିତା ସହିତ ବି ସେମାନେ ଖେଳିବାକୁ ପଛାଉ ନାହାନ୍ତି । ବିଭିନ୍ନ ପ୍ରକାର ଦ୍ୱନ୍ଦବାଦ-ବିବାଦ ସୃଷ୍ଟିକରିବା ଉଦ୍ଦେଶ୍ୟରେ ଭାଷଣ ବି ଦେଉଛନ୍ତି । ଏଭଳି ଭାଷଣ ଦେବାକୁ ଛାତ୍ର-ଛାତ୍ରୀମାନଙ୍କୁ ଶିକ୍ଷା ଦେଉଛନ୍ତି । ବେଶ ସେଇଠି ହିଁ ବିଷମଞ୍ଜି ବୁଣା ହେଇଯାଉଛି । ପୁଣି କୁଳପତିଙ୍କ କାର୍ଯ୍ୟାଳୟରେ ବିକ୍ଷୋଭ ପ୍ରଦର୍ଶନ- ବିଶ୍ୱ ବିଦ୍ୟାଳୟର ସଂପତ୍ତିର ଜଳାପୋଡ଼ା ଆରମ୍ଭ ହେଇଯାଉଛି । ଫଳରେ ସମଗ୍ର ସହର ଓ ଆଖପାଖ ଅଞ୍ଚଳରେ ଅଶାନ୍ତିର ବାତାବରଣରେ ସୃଷ୍ଟି ହୋଇଯାଉଛି । ଆଜିର ମିଡ଼ିଆ ସେହି ବିଶୃଙ୍ଖଳିତ ଛାତ୍ରମାନଙ୍କୁ ହୀରୋ ଭାବରେ ହାଇଲାଇଟ୍ କରି ଚାଲନ୍ତି । ଫଳରେ ଅତି କମଦିନରେ ସେ ଜଣେ ନେତା ଭାବରେ ପରିଚିତ ହେଇଯାଉଛନ୍ତି । ରାଜନୈତିକ ପ୍ରଦୁଷଣର ଏହା ହେଉଛି ପ୍ରାଥମିକ ଅବସ୍ଥା, ଯାହା ଭ୍ରଷ୍ଟାଚାରୀ, ଅଶାନ୍ତ ଏବଂ ବିବାଦ ଘେର ଭିତରକୁ ରାଷ୍ଟ୍ରକୁ ଠେଲିଦିଏ ।

ଆମେ ନିଜର ଯୁବ-ସଂଗଠନଗୁଡ଼ିକୁ ଶାଳୀନତାର ଶିକ୍ଷଣ ଦେବା, ଯାହାଦ୍ୱାରା ରାଷ୍ଟ୍ରଭକ୍ତ-ଲୋକସେବୀ ଯୁବକଙ୍କର ଅନୁପାତ ଅଧିକରୁ ଅଧିକ ହେବ । ଯୁବକଙ୍କର ବ୍ୟକ୍ତିତ୍ୱ ଯେଭଳି ସେମାନଙ୍କଭଳି ନ ହେବ, ଯେଭଳି କରିବାକୁ ହେବ । ସମାଜରେ ପ୍ରଚଳିତ ଯେତେଗୁଡ଼ିଏ ଗତିବିଧି ରହିଛି, ସବୁଥିରେ ଯୁବକମାନଙ୍କର ଭାଗିଦାର

ରହିବ । ଲାଗିବ ଆମରାଷ୍ଟ୍ର ଶ୍ରେଷ୍ଠରାଷ୍ଟ୍ର ହେଇପାରିବ । ଶାଳୀନ ଯୁବକ-ଶ୍ରେଷ୍ଠ ଯୁବକ, ଏହା ଆମର ଉଦ୍‌ଘୋଷ ଅଟେ ।

୩. ସ୍ୱାବଲମ୍ବୀ ଯୁବକ- ଉଦ୍ୟମଶୀଳ ଯୁବକମାନଙ୍କଦ୍ୱାରା ହିଁ ଯେକୌଣସି ରାଷ୍ଟ୍ର ବିକଶିତ ହୋଇ ସ୍ୱତନ୍ତ୍ର ପରିଚୟ ସୃଷ୍ଟିକରେ । ଏମାନଙ୍କର ସଂଖ୍ୟା ଯେତେ ଅଧିକ ହେବ ଏବଂ ସେମାନଙ୍କଦ୍ୱାରା ସେତେ ଅଧିକ ଲାଭ ରାଷ୍ଟ୍ରକୁ ଆସିପାରିବ । ଫଳରେ ରାଷ୍ଟ୍ରର ର୍‍ୟାକିଂ ସର୍ବୋଚ୍ଚ ମାନ୍ୟତା ପାଇବ । ମହାତ୍ମାଗାନ୍ଧୀ ମୌଳିକ ଶିକ୍ଷାକୁ ଗୁରୁତ୍ୱଦେଇ କହିଥିଲେ-ବାଲ୍ୟକାଳରୁ ହିଁ ଏହି ସଂସ୍କାର ସେମାନଙ୍କ ଉପରେ ଢ଼ାଳି ଦିଆଯିବା ଉଚିତ । ଯଦି ନିଜ ହାତରେ ନିଜର କାମ କରିବାର ପ୍ରବୃତ୍ତି ଆରମ୍ଭ ହୋଇଯାଏ, ଛୋଟ ଛୋଟ କାର୍ଯ୍ୟ କରିବାରେ ବି କୌଣସି ପ୍ରକାର ହୀନମନ୍ୟତା ଭାବ ନ ଆସେ, ତେବେ ତ ସ୍ୱାବଲମ୍ବନର ବୃତ୍ତି ସ୍ୱତଃ ବିକଶିତ ହେଇ ଚାଲିବ । ରୋଟି, କପଡ଼ା ଓ ଘର ମଣିଷ ପାଇଁ ସ୍ୱାଭାବିକ ଆବଶ୍ୟକତା । ଆମ ଦେଶରେ ତ ପାଠପଢ଼ାକୁ ଅଧିକ ଗୁରୁତ୍ୱ ଦିଆଯାଉଛି । କିନ୍ତୁ ଡ଼ିଗ୍ରୀ ହାସଲ କରି ଯଦି ବେକାରଙ୍କ ଭିଡ଼କୁ ସେମାନେ ବଢ଼ନ୍ତି, ତେବେ ଲାଭ କ'ଣ ? ପଢ଼ା ଲେଖା ଶିକ୍ଷିତ ଯୁବକଙ୍କ ସଂଖ୍ୟା ଦିନକୁଦିନ ବଢ଼ି ଚାଲିଛି । ଶିକ୍ଷକତା ସଂସାର ସଂଖ୍ୟା ବି ବଢ଼ିଛି । କିନ୍ତୁ ଚାକିରି ପାଇଁ ସେତେ ସୁଯୋଗ ସୁବିଧା ନାହିଁ । ସେହିଭଳି ଯୁବକମାନଙ୍କୁ ସ୍ୱୟଂ ଆତ୍ମନିର୍ଭରଶୀଳ ହେବାକୁ ପଡ଼ିବ । ସହଯୋଗିତା ଭିତ୍ତିରେ ଛୋଟ ଛୋଟ ଗୃହ ଉଦ୍ୟୋଗକୁ ବଢ଼ାଇଦେଇ ସେହି ପଢ଼ାଲେଖା ଶିକ୍ଷିତ ଯୁବକମାନଙ୍କୁ ତା' ମାଧ୍ୟମରେ କିଛି ରୋଜଗାର କରିବାର ବ୍ୟବସ୍ଥା କରାଯାଇପାରିବ । ପ୍ରକୃତରେ ଆତ୍ମାବଲମ୍ବନ-ସ୍ୱାବଲମ୍ବନ ହେଉଛି, ଗୋଟିଏ ଆଧ୍ୟାତ୍ମିକ ଗୁଣ । ଏହାକୁ ଯେତେ ବିକଶିତ କରାଯିବ, ସେତେ ଯୁବକ ନିଜର ସାର୍ଥକତା ଅନୁଭବ କରିପାରିବେ ।

ଆଗକାଳରେ "ସ୍ୱାଲୋକନ"କୁ ସ୍ୱାବଲମ୍ବୀ ଲୋକସେବା ମଣ୍ଡଳ ଭାବେ ଚର୍ଚ୍ଚା କରାଯାଉଥିଲା । ଏହାକୁ ଇଂରାଜୀରେ ସେଲ୍‌ଫ ରିଲାୟଣ୍ଟ ବାଲଣ୍ଟି ଏଷ୍ଟାବ୍ଲିସ୍‌ମେଣ୍ଟ (SRBA) ବି କୁହାଯାଏ । ସମଗ୍ର ଦେଶରେ ବିଭିନ୍ନ ସ୍ଥାନରେ ଏହାର ପ୍ରୟୋଗ ଏବେ କରାଯାଇଛି । ଦୃଷ୍ଟିଲାଭ ଅର୍ଜନର ନୁହେଁ, ପୁଞ୍ଜିର ସୂଚିତା ତଥା ପାରଦର୍ଶିତା ସୃଷ୍ଟିକରି ରଖିଲେ ହିଁ ଏହି କାମ କରିପାରିବା । ଆଇ.ଆଇ.ଏମ୍‌ରୁ ପାସ୍‌କରି ବାହାରିଥିବା ଅନେକ ଛାତ୍ର ଏବେ ଏହି କାମ କରୁଛନ୍ତି । ଲକ୍ଷ ଲକ୍ଷ ଟଙ୍କା ଦରମାକୁ ଛାଡ଼ି ସେମାନେ ଏଭଳି ମଣ୍ଡଳ ତିଆରି କରି ସଂତୋଷ ଲାଭ କରୁଛନ୍ତି । ଆମ ଦେଶକୁ

ଯଦି ସମ୍ପନ୍ନ କରିବାର ଅଛି, ତେବେ ଚୀନ, ଆମେରିକା, ୟୁରୋପକୁ ଏହାର ମାଧ୍ୟମରେ ଆହ୍ୱାନ ଦେଇପାରିବା ।

୪. ସେବାଭାବୀ ଯୁବକ- ସେବା ବିନା ଯେ କୌଣସି ଯୁବକର ଜୀବନ ବ୍ୟର୍ଥ ହୋଇଥାଏ । ଏହା ଏମିତି ଏକ ଭାବ, ଯାହା ଆମକୁ ମହାମାନବ କରିପାରିବ । ଆଜି ତ ସଂବେଦନା କୁଆଡ଼େ ଚାଲିଗଲା ପରି ଲାଗୁଛି । ଏଭଳି ଘଟଣାକ୍ରମ ମାନ ଆମ ଆଗକୁ ଆସୁଛି । ଯାହାକୁ ଦେଖି ଲାଗୁଛି କି ଯଦି ଉପସ୍ଥିତ ଯୁବକମାନେ ସେବାଭାବର ପରିଚୟ ଦେଇଥିଲେ, କେଡ଼େ ସୁନ୍ଦର ହୋଇଥା'ନ୍ତା । ରାଷ୍ଟ୍ରୀୟ ବିପଦ ବେଳେ ହେଉ କିମ୍ବା ସଡ଼କ ଦୁର୍ଘଟଣା ବେଳେ ହେଉ, ଅଥବା ବୃଦ୍ଧବୃଦ୍ଧାମାନଙ୍କୁ ସହାୟତା କାର୍ଯ୍ୟରେ ଆମେ ସେବାଭାବର ଆଧ୍ୟାତ୍ମିକ ପ୍ରକ୍ରିୟାକୁ ବୁଝିବାକୁ ହେବ । ଆଜିର ସବଳ ଯୁବକମାନଙ୍କୁ ବିଭିନ୍ନ କ୍ଷେତ୍ରରେ ଅସହାୟ, ବିକଳାଙ୍ଗମାନଙ୍କୁ ଠିକ୍ ସମୟରେ ସେବା କରିବାର ପୁଣ୍ୟ ଦେଇପାରୁଛି । ଗ୍ରାମୀଣ ଅଞ୍ଚଳରୁ ଆରମ୍ଭକରି ବିକଶିତ ଅଞ୍ଚଳରେ ଏତେ ଅବସର ରହିଛି ଯେ, ସେଠାରେ ବିଭିନ୍ନ ଯୋଜନା ଆରମ୍ଭ କରାଯାଇପାରିବ ।

ଆମ ପରିବାରରେ ଯୁବକମାନଙ୍କର ଶକ୍ତିରେ ଆମେ ତଟଶୁଦ୍ଧି, ଜଳଶୁଦ୍ଧି, ନଦୀଶୁଦ୍ଧି-ନିର୍ମଳ-ଅବିରଳ ଗଙ୍ଗା ସହିତ ସମଗ୍ର ଦେଶର ନଦୀଗୁଡ଼ିକୁ ସଫା କରିବାର ଅଭିଯାନ ଚଳାଇଛି । ଆଗାମୀ ଦଶବର୍ଷରେ ହଜାର ହଜାର ଯୁବ ସଂଗଠନ ଏଭଳି କାମ କରି ଦେଖାଇଦେବେ । ଏଥିରେ କୌଣସି ସନ୍ଦେହ ନାହିଁ । ସୁଖୀ ସମୃଦ୍ଧ-ସୁସମ୍ପନ୍ନ ରାଷ୍ଟ୍ର, ସେବାଭାବର ବିକାଶଦ୍ୱାରା ସୃଷ୍ଟି ହେବ । ଯେତେବେଳେ ଯୁବକମାନେ ଶ୍ରମଶୀଳ ହେବେ, ସଂଗଠିତ ହେବେ, ଏବଂ ଅନ୍ୟର କଷ୍ଟକୁ ନିଜର କଷ୍ଟ ମାନିବେ ଏବଂ ଅନ୍ୟଙ୍କୁ ସାହାଯ୍ୟ କରିବେ, ତେବେ ଯାଇ 'ସୁଖ' ବ୍ୟାପକ ହେବ । ପ୍ରତ୍ୟେକ ସ୍ଥାନ, ପ୍ରତ୍ୟେକ ଅଞ୍ଚଳରେ, ପ୍ରତ୍ୟେକ ମୁହୂର୍ତ୍ତରେ ସେବାର ଅନେକ ସୁଯୋଗ ରହିଛି । କେବଳ ଆମର ଭାଗିଦାର ଏଥିପାଇଁ ଜରୁରୀ । ଲାୟନ୍ସ କ୍ଲବ୍, ରୋଟାରୀ କ୍ଲବ୍, ଭାରତ ବିକାଶ ପରିଷଦ ଭଳି ସଂଗଠନ ସେବାଭାବଦ୍ୱାରା ହିଁ ଉପରକୁ ଉଠିପାରିଛନ୍ତି । ଅଖିଳ ବିଶ୍ୱ ଗାୟତ୍ରୀ ପରିବାରକୁ ମଧ୍ୟ ଏଭଳି କାମ କରିବାକୁ ହେବ । ଆମର ଚରିସୂତ୍ର ସ୍ୱସ୍ଥ ଯୁବକ-ଶାଳୀନ ଯୁବକ, ସ୍ୱାବଲମ୍ବୀ-ଯୁବକ, ସେବାଭାବୀ ଯୁବକମାନେ ଆମକୁ ପ୍ରଶ୍ନ ପଚାରୁଛନ୍ତି- କ'ଣ ଆମେ ଏପରି ଅଟୁ ?     -୦-

# ନିରନ୍ତର ଗତିଶୀଳ ଯୁବକଙ୍କ ବିଧିବଦ୍ଧ ପ୍ରଶିକ୍ଷଣ

**ସଂଗଠନ ସଶକ୍ତିକରଣ-** ସଂଗଠନକୁ ସଶକ୍ତ କରିବାପାଇଁ ସମସ୍ତ ଜିଲ୍ଲାର ଯୁବ କାର୍ଯ୍ୟକର୍ତ୍ତାଙ୍କ ପାଇଁ ପ୍ରଶିକ୍ଷଣ ଶିବିର ଆୟୋଜନ କରାଯାଉ । ସୃଜନଶୀଳ, ପ୍ରତିଭାଶାଳୀ ଯୁବକମାନଙ୍କୁ ଖୋଜି ତାଙ୍କୁ ସଂଘବଦ୍ଧ କରିବା ହେଉଛି, ଏହାର ମୂଳ ଲକ୍ଷ୍ୟ । ଯୁବାମଣ୍ଡଳକୁ ସୁବ୍ୟବସ୍ଥିତ ଭାବେ ସଂଗଠିତ କରି ତାଙ୍କୁ ହୀରାମାଳା ଭଳି ଗୁନ୍ଥିସାରି ନିର୍ମାଣରେ ନିୟୋଜିତ କରିବା ଆବଶ୍ୟକ । ଏହାର ଅର୍ଥ ଯୁଗଋଷିଙ୍କ ଗଳାରେ ଏହି ହୀରାମାଳାକୁ ପିନ୍ଧାଇବାର ଅଛି । ଏକ ପ୍ରତିଶତ ଯୁବଶକ୍ତି ଅର୍ଥାତ୍ ଆଠକୋଟି (୩୫ ବର୍ଷର ୬୫%) ଯୁବକମାନଙ୍କ ମଧ୍ୟରେ ସଘନ ସଂପର୍କ ସ୍ଥାପିତ କରିବାର ଅଛି ।

## ଯୁବ ପ୍ରଶିକ୍ଷଣ ଶିବିରର ପ୍ରାରୂପ ଏହି ପ୍ରକାର ରହିଛି

୧. ୫ ଦିବସୀୟ ପ୍ରଶିକ୍ଷକ ପ୍ରଶିକ୍ଷଣ ଶିବିର (TOT ଶିକ୍ଷକମାନଙ୍କର ପ୍ରଶିକ୍ଷଣ ।)

୨. ଗୋଟିଏ ଦିନପାଇଁ ଯୁବ ଶିବିର ଆୟୋଜନ ।

ଆଜିର ସମୟ ଅଭାବ ଯୁଗରେ ଅର୍ଦ୍ଧସହରୀ ଏବଂ ସହରାଞ୍ଚଳର ଯୁବକଙ୍କୁ ଯୁଗନିର୍ମାଣ ଯୋଜନା ଓ ତା'ର ସପ୍ତକ୍ରାନ୍ତି ମାଧ୍ୟମରେ ସମାଜ ନିର୍ମାଣ ଉଦ୍ଦେଶ୍ୟରେ ନିୟୋଜିତ କରିବାକୁ ହେବ । ଏଥିରେ ଏକ ଘଣ୍ଟାପାଇଁ ଧ୍ୟାନ ଓ ଯୋଗ, ବିଭିନ୍ନ ବ୍ୟାଖ୍ୟାନ ନିର୍ଦ୍ଧାରିତ ବିଷୟରେ ଓ ମନୋରଞ୍ଜନ ଖେଳର ଆୟୋଜନ, ପ୍ରଶ୍ନୋତ୍ତରୀ ଏବଂ ଉଦ୍‌ଯାପନ କ୍ରମରେ କାର୍ଯ୍ୟକ୍ରମ ରଖାଯିବ । ଏକ ଦିବସୀୟ ଆଦର୍ଶ ଯୁବ ଶିବିରରେ ସୁସ୍ଥ ଜୀବନର ନିର୍ଣ୍ଣୟ ସୂତ୍ରଗୁଡ଼ିକ ସହିତ ବିଭିନ୍ନ ଦୁଷ୍ପ୍ରଭାବ ତଥା ସେଥିରୁ ମୁକ୍ତି ସଂପର୍କରେ ଆଲୋଚନା କରାଯିବ । ଅନ୍ୟ ଅଧିବେଶନରେ ସ୍ୱାବଲମ୍ବନର ସୈଦ୍ଧାନ୍ତିକ ଏବଂ ପ୍ରାୟୋଗିକ କାର୍ଯ୍ୟକ୍ରମ ରହିବ । ଶେଷରେ ପର୍ଯ୍ୟାବରଣ ସଂରକ୍ଷଣ ସମ୍ବନ୍ଧୀୟ କାର୍ଯ୍ୟକ୍ରମ ଉପରେ ଚର୍ଚ୍ଚା କରାଯିବ ।

ବିଭିନ୍ନ କର୍ମଶାଳା କ୍ରମରେ ଯେଉଁଠି ଯେଭଳି ପରିସ୍ଥିତି ରହିଛି, ତାକୁ ଦୃଷ୍ଟିରେ ରଖି କର୍ପୋରେଟ୍ ଏକ୍ସିଲେନ୍ସ ଉପରେ କର୍ମଶାଳା, ଉତ୍ତେଜନା ପ୍ରବନ୍ଧନ ଶିବିର, କର୍ମକ୍ଷେତ୍ରରେ ଆଧ୍ୟାତ୍ମିକତା, ପରିଷ୍କୃତ ଅଧ୍ୟାତ୍ମ ସମ୍ବନ୍ଧୀୟ ଆଲୋଚନାଚକ୍ରର ଆୟୋଜନ କରାଯିବ । ସେଠାରେ ଏଭଳି ଆଧ୍ୟାତ୍ମ୍ୟ ଓ ବିଜ୍ଞାନ ସମ୍ମତ ପ୍ରତିପାଦନ ସହିତ ବିଚାରକ୍ରାନ୍ତି ଉପରେ କର୍ମଶାଳା, ବିଚାରର ପରିବର୍ତ୍ତନଦ୍ୱାରା ଆତ୍ମସଙ୍କଳ୍ପଯୁକ୍ତ ଯୁବକମାନଙ୍କୁ ନିୟୋଜିତ କରାଯାଇପାରିବ, ସେ ସଂପର୍କରେ ମଧ୍ୟ ଜୀବନ ପ୍ରବନ୍ଧନ କର୍ମଶାଳା ଆୟୋଜନ କରାଯିବ । ଜୀବନର ଉଦ୍ଦେଶ୍ୟ ସ୍ଥିର କରି କେମିତି ଆଗେଇ ଯିବାକୁ ପଡ଼ିବ, ନେତୃତ୍ୱର ବିକାଶ ଉଦ୍ଦେଶ୍ୟରେ କର୍ମଶାଳା, ପୁଣି ନିର୍ଣ୍ଣୟ କ୍ଷମତାର ବିକାଶ ଏବଂ ନିଜ ଭିତରେ ଥିବା ଶକ୍ତିକୁ କିଭଳି ନିୟୋଜନ କରାଯାଇପାରିବ, ସେଥିପାଇଁ ହୋଲିଷ୍ଟିକ୍ ହେଲ୍‌ଥ କର୍ମଶାଳାରେ ଆଲୋଚନା ଓ ଚର୍ଚ୍ଚା ହେବ । ବ୍ୟସନମୁକ୍ତ ଜୀବନ ହେଉଛି, ଦେବତାଙ୍କ ଉପାସନା । ଏହାକୁ ଯୁବକମାନେ କିଭଳି ବିକଶିତ କରିପାରିବେ, ଆତ୍ମନିର୍ଣ୍ଣୟ ଉଦ୍ଦେଶ୍ୟରେ ଗାୟତ୍ରୀଙ୍କୁ ଏକ ସୁପର ସାଇନ୍ସଭାବେ ଜୀବନ ସହିତ ମିଶାଇବାକୁ ପଡ଼ିବ । କର୍ମୀମାନଙ୍କର କର୍ତ୍ତବ୍ୟ ଏବଂ ନୀତି ନିୟମ ଭିତରେ ରହି ଆମେ କିଭଳି ସମାଜ ସେବାରେ ଲାଗି ରହିପାରିବା, ସେଥିପାଇଁ ଅଣ୍ଡରଷ୍ଟାଣ୍ଡିଂ ସେଲଫ୍ କର୍ମଶାଳାର ଆୟୋଜନ ହେବ । ଯୁଗପ୍ରବକ୍ତାଙ୍କ ବିଶିଷ୍ଟ ପ୍ରଶିକ୍ଷଣ–ବିଶେଷଭାବେ ଯୁବକମାନଙ୍କର ମନରେ ଥିବା ଆଶା ଓ ପ୍ରଶ୍ନକୁ ବୁଝି, ସେମାନଙ୍କୁ ବୁଝାଇ ପାରୁଥିବା ଢ଼ଙ୍ଗରେ କହିବାକୁ ହେବ । ତେଣୁ ବାଣୀର ସାମର୍ଥ୍ୟ ଏବଂ ଆର୍ଟ୍ ଅଫ୍ ସ୍ପିକିଂ, ଆଚରଣରେ ସେହି ବାଣୀକୁ ମିଶାଇ ଶୁଣିବା, ଆତ୍ମବିଶ୍ୱାସ ଓ ସ୍ମୃତିର ବିକାଶ ତଥା ଗର୍ଭ ସଂସ୍କାର ମାଧ୍ୟମରେ ସଶକ୍ତିକରଣ ପାଇଁ ବିଶିଷ୍ଟ ନାରୀ ଜାଗରଣ ତାଲିମ ଶିବିରର କ୍ରମ ଏଥିରେ ସାମିଲ ହେବ ।

ପ୍ରଶିକ୍ଷଣରେ ଅନେକ ଗୁଡ଼ିଏ ଦିଗ ରହିଛି । ପ୍ରତ୍ୟେକ ଯୁବକ ନିଜ ନିଜର ରୁଚି ଅନୁସାରେ ବିଷୟ ଓ ବିଭାଗକୁ ବାଛିନେଇ ପାରିବେ । ପ୍ରତ୍ୟେକ ବିଷୟ ଉପରେ ପର୍ଯ୍ୟାପ୍ତ ସାମଗ୍ରୀ ରହିଛି । ବ୍ୟକ୍ତିତ୍ୱ ବିକାଶ, ଭାରତୀୟ ସଂସ୍କୃତି ଶିକ୍ଷକ ପ୍ରଶିକ୍ଷଣ, ଯୁବଚେତନା ସାଧନା, ବିପଦମୁକ୍ତ ପ୍ରବନ୍ଧନ ପ୍ରଶିକ୍ଷଣ, ଆର୍ଥିକ ସ୍ୱାବଲମ୍ବନ ଏବଂ ଜୀବନ ପ୍ରବନ୍ଧନ ଶିବିର ବି ଅତିରିକ୍ତ ବିଭାଗ ରହିଛି । ଏହି ଶିବିରଗୁଡ଼ିକ ଏକଦିବସୀୟ ବା ଆବଶ୍ୟକସ୍ଥଳେ ଅଧିକ ଦିନପାଇଁ କରାଯାଇପାରେ । ରହିବା ବ୍ୟବସ୍ଥାର ଅସୁବିଧାକୁ ଦୃଷ୍ଟିରେ ରଖି ସକାଳରୁ ସନ୍ଧ୍ୟା ପର୍ଯ୍ୟନ୍ତ ଏହି କାର୍ଯ୍ୟ ରଖାଯିବ ।

ଏହାକୁ ଶନିବାର-ରବିବାର ବା କୌଣସି ଛୁଟିଦିନରେ ବି ଆୟୋଜନ କରାଯାଇପାରିବ । ତିନି ଦିବସୀୟ କନ୍ୟା ଶିକ୍ଷଣ ଶିବିର ଗୁଡ଼ିକର ବି ପ୍ରାରୂପ କରାଯାଇଛି ।

ଆବାସୀୟ ଶିବିରରେ ଯୁବଶକ୍ତିକୁ ଧ୍ୟାନ ଉପରେ ପ୍ରଖର ପ୍ରଶିକ୍ଷଣ ଦିଆଯିବା ଦରକାର । ଏହାକୁ ପରମପୂଜ୍ୟ ଗୁରୁଦେବଙ୍କ ନିର୍ଦ୍ଦେଶ ଅନୁସାରେ କରାଯାଉ । ଧ୍ୟାନ ମାଧ୍ୟମରେ ବା ନିର୍ଦ୍ଦେଶଦ୍ୱାରା ସ୍ୱର୍ଣ୍ଣିମ ସୂର୍ଯ୍ୟୋଦୟରେ ଧ୍ୟାନଦୀପର ବିନ୍ଦୁ ଯୋଗ (ଜ୍ୟୋତି ଅବଧାରଣା) ସାଧନା, ଇଷ୍ଟ ଆରାଧ୍ୟର ଧ୍ୟାନ ବା ନାଦଯୋଗ ଇତ୍ୟାଦି କରାଯାଇପାରିବ । ଅଧା ଘଣ୍ଟାର ଏହି ପ୍ରକ୍ରିୟାକୁ ସଶକ୍ତ-ସମର୍ଥ ଯୁବକ କରିପାରନ୍ତି । ଧ୍ୟାନ ଧର୍ମ-ସଂପ୍ରଦାୟକୁ ଗୁରୁତ୍ୱ ଦିଏନାହିଁ । ବରଂ ଏହା ଅନ୍ତର୍ଜଗତକୁ ସଶକ୍ତ କରିଦିଏ । ଏହାଦ୍ୱାରା ସ୍ମରଣଶକ୍ତି ତ ବଢ଼େ, ଦୂରଦୃଷ୍ଟି, ବାହ୍ୟଦୃଷ୍ଟିକୁ ମଧ୍ୟ ବଢ଼ାଇ ଦେଇଥାଏ । ଧୈର୍ଯ୍ୟଶକ୍ତି ବଢ଼ାଇ ଆଳସ୍ୟ ପ୍ରମୋଦ ଭାବରୁ ମୁକ୍ତି ନେଇଥାଏ । ଧ୍ୟାନ ସଂପର୍କରେ ଅନେକ ପ୍ରକାର ସିଡ଼ି, କେସେଟ୍ ଏବଂ ବୁଝିହେଉଥିବା ମଙ୍ଗଳ ପ୍ରବଚନର ଡ଼ିଭିଡ଼ି ମଧ୍ୟ ଶାନ୍ତିକୁଞ୍ଜ, ହରିଦ୍ୱାରରେ ଉପଲବ୍ଧ ଅଛି । ସେଥିରେ ଦଶପ୍ରକାର ଧ୍ୟାନ ସଂପର୍କରେ ଶିକ୍ଷା ଦିଆଯାଇଛି । ସେଥିମଧ୍ୟରୁ ଯେକୌଣସି ଗୋଟିଏ ସଂଗ୍ରହ କରି କାର୍ଯ୍ୟକୁ ଆରମ୍ଭ କରାଯାଇପାରେ ।

ଯୁବକର୍ମକର୍ତ୍ତା ପ୍ରଶିକ୍ଷଣରେ ଯୋଗ ବ୍ୟାୟାମର ବଡ଼ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ରହିଛି । ଗତିଯୋଗ,(ୱାର୍ମଅପ) ସୂକ୍ଷ୍ମ ବ୍ୟାୟାମ, ପବନ ମୁକ୍ତାସନ ଇତ୍ୟାଦି । ପ୍ରଜ୍ଞାଯୋଗ-ସୂର୍ଯ୍ୟ ନମସ୍କାର ଏବଂ ଭସ୍ତ୍ରିକା, ନାଡ଼ି ଶୋଧନ, ଅନୁଲୋମ-ବିଲୋମ, ପ୍ରାଣାକର୍ଷଣ, ଭ୍ରାମରୀ ଏବଂ ଉଦ୍‌ଗୀତ । ଏହି ଛଅ ପ୍ରକାର ପ୍ରାଣାୟମ୍ ମଧ୍ୟ କରାଯାଇପାରେ । ଏ' ସଂପର୍କରେ ବିସ୍ତାରିତ ଭାବେ ଜାଣିବା ପାଇଁ "ଯୁବଚେତନା ଜାଗରଣ ମାର୍ଗଦର୍ଶିକା"-ଯାହାର ବିମୋଚନ ଚୈତ ନବରାତ୍ର ୨୦୧୬ ହୋଇଥିବା ତା"ର ପୃଷ୍ଠା-୩୩୬କୁ ଦେଖିପାରନ୍ତି । ଯୋଗ ନିଶ୍ଚିତଭାବେ ବ୍ୟକ୍ତିକୁ ଅନୁଶାସିତ କରାଏ । ସଂପୂର୍ଣ୍ଣ ଯୋଗ୍ୟ ଓ କାର୍ଯ୍ୟଦକ୍ଷ କରିଦେଇଥାଏ । ନିୟମିତ ଯୋଗ ବ୍ୟାୟାମ ପ୍ରଭାବୀ ହୋଇ ଥିବାରୁ ଏଥିପାଇଁ ୨୦ ରୁ ୩୦ମିନିଟ୍ ସମୟ ପ୍ରତିଦିନ ବାହାର କରିବାକୁ ହେବ । ମସ୍ତିଷ୍କର ଶକ୍ତିକୁ ବଳଶାଳୀ ଏବଂ ଚିତ୍ତକୁ ସ୍ଫଟିକପରି ନିର୍ମଳ ଓ ଶୁଦ୍ଧ କରିବାପାଇଁ ପ୍ରାଣାୟମଠାରୁ ଅନ୍ୟ କୌଣସି ସାଧନ ନାହିଁ ।

ଯୁବକମାନଙ୍କପାଇଁ ଅନ୍ୟ ଗତିବିଧିଗୁଡ଼ିକ ଯାହା ପ୍ରଶିକ୍ଷଣରେ ନିଆଯାଇ ପାରିବ, ତାହା ହେଉଛି ଦେଶୀ ଖେଳକୁଦ । କବାଡ଼ି, ଖୋ-ଖୋ ଇତ୍ୟାଦି । ଭାଷଣ ପ୍ରତିଯୋଗିତା, ଚିତ୍ରକଳା ପ୍ରତିଯୋଗିତା, ପ୍ରେରକ ପ୍ରସଂଗ ଶୁଣାଇବା, ପ୍ରତିଯୋଗିତା ଏବଂ ନିବନ୍ଧ ଲିଖନ ପ୍ରତିଯୋଗିତା ମଧ୍ୟ ଏହାର ଅନ୍ତର୍ଗତ ହେବ । ଏହା ବ୍ୟତୀତ ପୋଷ୍ଟର ଓ ଆହ୍ୱାନପତ୍ର ପ୍ରସ୍ତୁତ, ରାଷ୍ଟ୍ରୀୟ ଗୀତ, ପ୍ରଜ୍ଞାଗୀତର ଅନ୍ତାକ୍ଷରୀ, ପ୍ରଶ୍ନୋତ୍ତରୀ, କୁଇଜ୍ ପ୍ରତିଯୋଗିତା, ରଂଗୋଲି, ଏକକ ଅଭିନୟ ପ୍ରତିଯୋଗିତା, କ୍ରାଫ୍ଟ ବା ହସ୍ତକଳା ତଥା ସାମାଜିକ ବିଷୟ ଉପରେ ଯୁବକ-ଯୁବତୀମାନଙ୍କ ସମସାମୟିକ ବିଚାରକୁ ନେଇ ପାଞ୍ଚ ପାଞ୍ଚ ମିନିଟର ପ୍ରତିଯୋଗିତା ମଧ୍ୟ କରାଯାଇପାରିବ । ଅନେକ ପ୍ରକାର କାର୍ଯ୍ୟ ଯୋଜନା ପ୍ରସ୍ତୁତ କରାଯାଇପାରିବ । ଆତ୍ମବିଶ୍ୱାସର ବିକାଶ ପ୍ରତ୍ୟେକ ପ୍ରଶିକ୍ଷଣର ଅଂଶ ହେବ । ଏହାଦ୍ୱାରା ଅଗଣିତ ପ୍ରତିଭାଶାଳୀ ଯୁବକ-ଯୁବତୀ ଆତ୍ମପ୍ରକାଶ କରିପାରିବେ ।

ଏହି ଆବାସୀୟ ଶିବିର ଗୁଡ଼ିକରେ ସାଂସ୍କୃତିକ ସନ୍ଧ୍ୟାର ବି ଆୟୋଜନ କରାଯିବ । ୧୫ଦିବସୀୟ ଶିବିରରେ କୌଣସି ଗୋଟିଏ ଦିନ ଦେଶର ସମୟ ଓ ପରିସ୍ଥିତି ଅନୁସାରେ ବ୍ୟବସ୍ଥା କରାଯିବ । ଗାୟନ, ଭାଷଣ ଓ କବିତାପାଠ ଇତ୍ୟାଦି ମଧ୍ୟ ଏଥିରେ ଯୋଗ କରାଯାଇପାରେ । ସମୂହ ଗାନଦ୍ୱାରା ବି ପ୍ରତିଭାର ଆତ୍ମପ୍ରକାଶ ହୋଇପାରେ । ନୃତ୍ୟ ଇତ୍ୟାଦିର ଶିକ୍ଷଣ ଆନନ୍ଦଦାୟକ ହେବା ସହିତ କୌଣସି ଏକ ସାମାଜିକ ସମସ୍ୟାକୁ ଦୃଷ୍ଟିରେ ରଖି ସବୁ ଅଭିନୟ ବା ଆକ୍ସନ ସଙ୍ଗ୍ ଓ ଏକାଂକିକା ବି ଆୟୋଜନ କରାଯାଇପାରିବ । କିନ୍ତୁ ଏ' ସମସ୍ତ କାର୍ଯ୍ୟକ୍ରମ ବରିଷ୍ଠ ମାର୍ଗଦର୍ଶକଙ୍କଦ୍ୱାରା ପ୍ରଥମେ ପରୀକ୍ଷା ନିରୀକ୍ଷା କରାଯିବା ଦରକାର । ମନୋରଞ୍ଜନର ଅନେକପ୍ରକାର ବିଭାଗରେ ସାଂସ୍କୃତିକ କାର୍ଯ୍ୟକ୍ରମ ମାଧ୍ୟମରେ ଦେଖାଇ ଦିଆଯାଇ ପାରିବ । ନୁକଡ୍ ନାଟକ ବି ଆଜିର ସମସ୍ୟାଗୁଡ଼ିକ ବଡ଼ ସୁନ୍ଦର ଭାବରେ ଚିତ୍ରଣ କରିଥାଏ ।

ଶ୍ରମଦାନ ଉଦ୍ଦେଶ୍ୟରେ ଶିବିରାର୍ଥୀଙ୍କ ନିକଟରେଥିବା ବୃଦ୍ଧାଶ୍ରମ, ଜଳାଶୟ, ନଳକୂଅ, ଶିଶୁ ଓ ନାରୀ ସଂରକ୍ଷଣ ଗୃହ ଗୋଶାଳା ସଂସ୍ଥାନକୁ ନିଆଯାଇପାରିବ । ସେଠାରେ ସମସ୍ତ ଶ୍ରମ ପ୍ରତିଷ୍ଠା ଉଦ୍ଦେଶ୍ୟରେ ସେଠାକାର ସ୍ଥାନୀୟ ଲୋକଙ୍କ ସହିତ ମିଶି କାର୍ଯ୍ୟ କରିବେ । ବିକଳାଙ୍ଗ ଗୃହକୁ ଯାଇ ସେବା ପ୍ରୟୋଗ କରାଯାଇପାରେ ।

ବୃଦ୍ଧବୃଦ୍ଧାମାନଙ୍କ ନିକଟରେ ଅନେକ ଅନୁଭବ ଓ ସୂଚନାଥାଏ, ସେମାନଙ୍କୁ ସହାୟତାର ହାତ ବଢ଼ାଇବେ । ପରସ୍ପର ମଧ୍ୟରେ ସଂପର୍କ ଯୋଡ଼ିବେ । ସେବା ଆରାଧନାର ଏହା ହେବ ଅଦ୍ଭୁତ ପ୍ରୟୋଗ । ଝୁମ୍ପୁଡି ବସ୍ତି ଏବଂ ଅପରିଷ୍କାର ବସ୍ତିକୁ ସଫେଇ କରିବା ସେବା ପ୍ରୟୋଗର ଅନ୍ୟ ଏକ ମହତ୍ୱପୂର୍ଣ୍ଣ କାର୍ଯ୍ୟ । ଅଞ୍ଚଳର କର୍ମକର୍ତ୍ତା ଓ ଯୁବକମାନେ ଏହି କାର୍ଯ୍ୟ କରି ଏକ ଆଲୋକ ବର୍ତ୍ତିକା ଜଳାଇ ଦେଖାଇ,ଦେଇଛନ୍ତି । ବିଭିନ୍ନ ସ୍ଥାନରେ ବ୍ୟସନମୁକ୍ତ ରାଲି ବାହାର କରାଯାଇ ପାରିବ । ଏହାର ମାଧ୍ୟମରେ ଜନଜାଗୃତିର ଏକ ବିଲକ୍ଷଣ ବାତାବରଣ ମଧ୍ୟ ତିଆରି କରାଯାଇପାରିବ ।

ଯୁବ ପ୍ରଶିକ୍ଷଣ ଏହି ବର୍ଷର ଯୁବକ୍ରାନ୍ତି ବର୍ଷପାଇଁ ଏକ ମହତ୍ୱପୂର୍ଣ୍ଣ ଅଂଗ । ଏ'ଦିଗରେ ପ୍ରୟାସ ଯେକୌଣସି ଉପାୟରେ ଚାଲୁ ରଖିବାକୁ ପଡ଼ିବ । ନିଜର ଗୁରୁସତ୍ତାର ଗୁରୁପୂର୍ଣ୍ଣିମା ଦିବସରେ ଏହାଠାରୁ ଶ୍ରେଷ୍ଠ ଓ ବଡ଼ ଶ୍ରଦ୍ଧାଞ୍ଜଳି ଆଉ କ'ଣ ହେଇପାରେ ?



*-ଯୁବ ବିପ୍ଳବୀ ଚନ୍ଦ୍ରଶେଖର ଆଜାଦ୍*

# ପୁଣ୍ୟତୋୟା ଗଙ୍ଗାଙ୍କୁ ବଞ୍ଚାଇବା ପାଇଁ ଭାଗୀରଥୀ ପୁରୁଷାର୍ଥ

## ଯଦି ଏବେଠାରୁ ଆମେ ଲାଗିପଡ଼ିବା, ତେବେ ଏହା ସମ୍ଭବ ହେବ

ଆମେ ସମସ୍ତେ ଜାଣୁ ଯେ, କେବଳ ମଣିଷ ନୁହେଁ, ବରଂ ସମସ୍ତ ଜୀବଜଗତ, ବୃକ୍ଷଜଗତପାଇଁ ଜଳ କେତେ ମହତ୍ୱପୂର୍ଣ୍ଣ । ଆମର ଶରୀର ମଧ୍ୟ ଜଳରେ ତିଆରି ହୋଇଛି । ଶରୀରପାଇଁ ସବୁବେଳେ ଜଳର ଆବଶ୍ୟକତା ରହିଛି । ଏ'କଥାକୁ ଆମେ ଧ୍ୟାନରେ ରଖିଥାଉ । ଆମଦେଶ ଭାରତବର୍ଷ ବହୁତ ଗୌରବଶାଳୀ ଦେଶ । ଯେଉଁଠି ପୂର୍ବରୁ ପଶ୍ଚିମ ଏବଂ ପଶ୍ଚିମରୁ ପୂର୍ବ ପୁଣି ଉତ୍ତରରୁ ଦକ୍ଷିଣ ବିଭିନ୍ନ ନଦୀର ଧାର ବହିଚାଲିଛି । କିନ୍ତୁ ଏମାନଙ୍କ ମଧ୍ୟରୁ ଗଙ୍ଗାନଦୀକୁ ଭାରତବର୍ଷର ଜୀବନଧାରା କୁହାଯାଏ । ଗଙ୍ଗାନଦୀର ପ୍ରବାହର ପଛରେ ସଂସ୍କୃତି ରହିଛି । ଗୋଟାଏ ବିଶିଷ୍ଟ ସଭ୍ୟତା ରହିଛି । ଆଧ୍ୟାତ୍ମ ଦର୍ଶନ ମଧ୍ୟ ରହିଛି । ଏହାକୁ ପବିତ୍ରତମ ନଦୀବୋଲି ସମସ୍ତେ ମାନି ନେଇଛନ୍ତି । ଗୋମୁଖୀରୁ ବାହାରି ହିମାଳୟରୁ ଓହ୍ଲାଇ ଏହା ୨,୫୨୫ କିଲୋମିଟରବାଟ ଯାତ୍ରା ସମାପ୍ତ କରି ଶେଷରେ ଯାଇ ଗଙ୍ଗାସାଗରରେ ମିଶିଛି । ଆର୍ଯ୍ୟାବର୍ତ୍ତ ବା ଅଧାଭାରତ ଏହାଦ୍ୱାରା ଉପକୃତ ହେଉଥାଉଛି । ଗଙ୍ଗାନଦୀ ଯାତ୍ରାରେ ଅଗଣିତ ନଦୀ, ନାଳ ଓ ଜଳସ୍ରୋତ ଏଥିରେ ମିଶିଛି । ନିଜର ତୀବ୍ର ଅବିରଳ ପ୍ରବାହ କାରଣରୁ ସମସ୍ତ ଜଳରାଶିକୁ ଗୋଟିଏ ଧାରାରେ ପରିଣତ କରି ଆଗେଇ ଚାଲିଛି । ପ୍ରବାହମାନ- ଅବିରଳ ଗଙ୍ଗାରେ କେବେ ଅନେକ ଗୁଣଥିଲା, କିନ୍ତୁ ମାନବ ସଭ୍ୟତା ଓ ତଥାକଥିତ ବିକାଶଦ୍ୱାରା ମୋକ୍ଷଦାୟିନୀ ଏହି ପବିତ୍ର ନଦୀର ଜଳ ଆଜି ଗାଧୋଇବା ପାଇଁ ମଧ୍ୟ ଅଯୋଗ୍ୟ ହେଇଯାଇଛି । ପିଇବା କଥା ତ ଚିନ୍ତା କରାଯାଇ ନ ପାରେ ।

ଯେଉଁ ପବିତ୍ର ନଦୀକୁ ସମ୍ମାନ ପୂର୍ବକ ଅଗଣିତ ଜନତା ଗରିମାମୟ ଗୀତରେ ଆରାଧନା କରନ୍ତି, ସେଥିରେ ମହାନଗରୀର ମଇଳା, କଳକାରଖାନାର ଆବର୍ଜନା, ପଚ୍ଚନାଳର ପାଣି, ଶବ ଇତ୍ୟାଦି ପ୍ରତିଦିନ ମିଶୁଛି । ବିନା ବାଧା ବିନା ଅଭିଯୋଗରେ ଏହି କୁକର୍ମ ନିତ୍ୟ ନୈମିତ୍ୟ ଚାଲୁ ରହିଛି । ହିମାଳୟର ଗ୍ଲେସିୟର ଏହି ଜଳଧାରାକୁ ଅଭିପୂରିତ କରୁଛି । ଋଷିକେଶ-ହରିଦ୍ୱାର ତଳକୁ ଆସି ବୃକ୍ଷଲତାଙ୍କୁ ସବୁଜ ଚାଦରରେ ଢ଼ାଙ୍କି ଦେଉଛି, କିନ୍ତୁ ହେଉଛି କ'ଣ ? ବିଶ୍ୱ ତପ୍ତିକରଣ ଫଳରେ ଗ୍ଲେସିୟର ତରଳି ଚାଲିଛି । ଜଙ୍ଗଲର ବୃକ୍ଷଲତା କଟାଯିବା କାରଣରୁ ଭୂକ୍ଷରଣ ହେଉଛି । ପ୍ରତିବର୍ଷ ଭୟାବହ ବନ୍ୟା ଆସୁଛି । ଧରିତ୍ରୀ ଉପରେ ଗଙ୍ଗା ଓହ୍ଲାଇବା ପରେ (ଋଷିକେଶ ପରେ) ଏହାଙ୍କୁ ପ୍ରବହମାନ କରିବାପାଇଁ ବୃକ୍ଷଲତା ହିଁ କାର୍ଯ୍ୟ କରିଥାନ୍ତି । ଏହା ହେଉଛି, ମାଟିସ୍ତର ଉପରେ ଗଙ୍ଗା ବା ଯେକୌଣସି ନଦୀର ଗ୍ଲେସିୟର । କିନ୍ତୁ ହେଉଛି କ'ଣ ? ଆଖିବୁଜା ସହରୀକରଣ ଫଳରେ ଗଙ୍ଗାନଦୀର କୂଳ କେବଳ ଏଇଠି ନୁହେଁ, ଗଙ୍ଗୋତ୍ରୀ ତଳେ ଥିବା ଜଳାଶୟ ଓ ତା ତଳେ ଥିବା ଦେବପ୍ରୟାଗ ପର୍ଯ୍ୟନ୍ତ ତଥା ବଦ୍ରିନାଥର ତଳେ ଥିବା ଦେବପ୍ରୟାଗ ପର୍ଯ୍ୟନ୍ତ ଏବଂ ଏହାଛଡ଼ା ଋଷିକେଶ ପର୍ଯ୍ୟନ୍ତ ପ୍ରଭାବିତ ହେଇଯାଇଛି । ନଦୀତଟରେ ବଡ଼ବଡ଼ ହୋଟେଲ ବି ଗଢ଼ିଉଠିଛି । ଧର୍ମଶାଳା ତଥା ରିସାର୍ଟ ନିର୍ମାଣ କରାଯାଇଛି । ପାଣି ବିଜୁଳୀର ଛୋଟ ଯୋଜନା ହେବାର ଥିଲା । ଏବେ ବଡ଼ବଡ଼ ବନ୍ଧ ବନ୍ଧା ଚାଲିଛି । ୨୦୧୩ ମସିହାର କେଦାରନାଥ ଉପରେ ବିପଦ ଦେଖି ବି ଆମର ଚେତା ପଶୁନାହିଁ । ଆମେ ଏକଥା ବି ଚିନ୍ତା କରିପାରୁ ନାହୁଁ ଯେ, କେତେ ଦ୍ରୁତଗତିରେ ଆମେ ଗଙ୍ଗାର ଅସ୍ତିତ୍ୱକୁ ଲୋପ କରିବାରେ ଲାଗି ରହିଛୁ ।

ଏହାର ଲେଖକ ଓ ସଂପାଦକ ନିଜେ **ଭଗୀରଥୀ ଓ ଅଳକାନନ୍ଦା (ଦୁଇ ମୂଳଧାରା) ଯାହା ଗଙ୍ଗା ନାମରେ ନାମିତ**, ତାହାର କୂଳକୁ ଆମେ କିଭଳି କ୍ଷତିସାଧନ କରି ଚାଲିଛୁ ସେସବୁ ନିରୀକ୍ଷଣ କରିଛନ୍ତି । ସେତିକି ନୁହେଁ, ଯେମିତି ଆମକୁ ଆମର ମାଆ ଗଙ୍ଗାନଦୀର ପବିତ୍ରତା ବିଷୟରେ ସେଭଳି କହିଛନ୍ତି । କୋଟିକୋଟି ଭାରତବାସୀ ମଧ୍ୟ ଗଙ୍ଗା ନାମଦ୍ୱାରା ଏକ ପବିତ୍ର ଭାବ ସୃଷ୍ଟି ହୋଇଥାଏ ବୋଲି କହିଛନ୍ତି । ମାତ୍ର ତାହାର ପବିତ୍ରତାକୁ ମଧ୍ୟ ଆମେ ଚିରହରଣ କରିନେଇଛୁ । ତା'ର ଅସ୍ତିତ୍ୱକୁ ଲୋପ କରିଦେଉଛୁ ।

ଏହି କାରଣରୁ ଯୁବକ୍ରାନ୍ତି ବର୍ଷରେ ଗାୟତ୍ରୀ ପରିବାର ଭଗୀରଥୀ ଜଳାଭିଷେକ ଅଭିଯାନକୁ ଗତିଶୀଳ କରିଦେଇଛି । ୨୦୧୬ ମସିହାରୁ ୨୦୨୬ ମସିହା ପର୍ଯ୍ୟନ୍ତ ପୂରା ଅବଧିରେ ପ୍ରତ୍ୟେକ ବର୍ଷ ଏହି କାର୍ଯ୍ୟକ୍ରମକୁ ତୀବ୍ରତର କରିବାକୁ ହେବ । ଗଙ୍ଗାନଦୀର ଅସ୍ତିତ୍ୱ ଲୋପ ହେଲେ ଆମର ଅସ୍ତିତ୍ୱ ବି ଲୋପ ପାଇଯାଇପାରେ, ଏ'କଥାକୁ ଯେତେଦିନ ଯାଏ ମଣିଷ ବୁଝି ନ ପାରିଛି, ସେତେ ଦିନଯାଏ ଏହି କାର୍ଯ୍ୟକ୍ରମ ଚାଲୁ ରହୁ । ସମଗ୍ର ଆର୍ଯ୍ୟବର୍ତ୍ତ- ଭାରତବର୍ଷର ଅସ୍ତିତ୍ୱର କେନ୍ଦ୍ରବିନ୍ଦୁ ହେଉଛି ଗଙ୍ଗା । ଯେଉଁଥିରେ ପାଖାପାଖି ଏକତିରିଶଟି ଛୋଟବଡ଼ ନଦୀ ଆସି ମିଶିଛନ୍ତି । ଶୁଦ୍ଧି କରିବା ତ ଏସମସ୍ତ ନଦୀକୁ ବି ଶୁଦ୍ଧି କରିବାକୁ ହେବ । ଏହି କାର୍ଯ୍ୟରେ ଅଧିକରୁ ଅଧିକ ସ୍ୱୟଂସେବୀ କର୍ମକର୍ତ୍ତାଙ୍କୁ ନିୟୋଜିତ କରିବାକୁ ହେବ । ଯେମିତି କି ଏହି କାର୍ଯ୍ୟ ନିରନ୍ତର ଚାଲୁ ରହିପାରିବ ।

ନିର୍ମଳ ଗଙ୍ଗା ଜଳ ଅଭିଯାନ, ଜଳ ସଂରକ୍ଷଣ ଏବଂ ଚାଷପାଇଁ ପାଣି ପ୍ରଭୃତି ବିବିଧ କାର୍ଯ୍ୟକ୍ରମ ତଥା ଶ୍ରୀରାମ ସରୋବର ତିନିଟି ସ୍ୱରୂପର ଏହି ଅଭିଯାନ ବିଗତ ବର୍ଷ ଆରମ୍ଭ ହାଇଛି । ଏହିବର୍ଷ ବସନ୍ତ ଋତୁରେ ଏଥିରେ ତୀବ୍ରଗତି ଆସିଛି ।

## ନିର୍ମଳ ଗଙ୍ଗା ଜଳ ଅଭିଯାନ

ହିମାଳୟର ହୃଦୟ ତରଳୁଛି । ଗ୍ଲେସିୟର ଖସୁଛି । ଗଙ୍ଗା ଗୋମୁଖରୁ ପ୍ରବାହିତ ହୋଇ ପୃଥିବୀ ପୃଷ୍ଠରେ ଗଡ଼ିଚାଲିଛି । ଏହା ହେଉଛି-ଭାରତୀୟ ଦର୍ଶନ, ଆଧ୍ୟାତ୍ମ-ସଂସ୍କୃତିର ପବିତ୍ର ପ୍ରବାହ । କିନ୍ତୁ ଜଳର ପ୍ରବାହ ନାହିଁ । ଶ୍ରୀକୃଷ୍ଣ ଏ'କଥାକୁ ଗୀତାରେ କହିଛନ୍ତି- "ସ୍ରୋତସାମସ୍ମି ଜାହ୍ନବୀ" (୧୦/୩୧) ଅର୍ଥାତ୍ ନଦୀ ମଧ୍ୟରେ ମୁଁ ଗଙ୍ଗା । ଏହାର ପ୍ରବାହ ସାଧାରଣ ପ୍ରବାହ ନୁହେଁ । ସାକ୍ଷାତ ଯୋଗେଶ୍ୱର ଏଥିରେ ବୁଡ଼ି ରହନ୍ତି । ଏହାର ଜଳସ୍ରୋତରେ ଝାମ୍ପଦେଇ ଆରପାରିକୁ ଯାଇହୁଏ । ଯେତେବେଳେ ବିହାର ଓ ବଙ୍ଗଳା ପର୍ଯ୍ୟନ୍ତ ଏହି ଜଳସ୍ରୋତ ପହଞ୍ଚିଯାଏ, ସେଥିରେ ଷ୍ଟିମର ବି ଚାଲେ । ସେଠାରେ ଗଙ୍ଗା ବହୁତ ଚଉଡ଼ା ହେଇଯାଇଛି । ଯେତେବେଳେ ଏହି ଜଳସ୍ରୋତ ଗଙ୍ଗାସାଗରରେ ମିଶେ, ସେତେବେଳର ଦୃଶ୍ୟ ଦେଖିବା ଯୋଗ୍ୟ ହେଇଯାଏ ।

ପ୍ରାଣୀର ମୋକ୍ଷ ପାଇଁ ଯେଉଁ ଜଳବିନ୍ଦୁ ଉଦ୍ଦିଷ୍ଟ, ଯାହାପାଇଁ ଭାରତବାସୀ ଯେକୌଣସି କୋଣରେ ଥାଇ ଏହି ଜଳବିନ୍ଦୁକୁ ଅପ୍ରତିମ ଶ୍ରଦ୍ଧା ରଖିଥାନ୍ତି । ସେହି

ଜଳରାଶିକୁ ଆମେ ପାନୀୟ ବା ସ୍ନାନଯୋଗ୍ୟ ବି କରି ପାରୁନାହୁଁ । ପ୍ରାୟ ଶହେ ବର୍ଷତଳୁ ଆମର ଅଧପତନ ହେଇଯାଇଛି ବୋଲି କୁହାଯାଇପାରିବ । ତଥାକଥିତ ଆଧୁନିକ ସଭ୍ୟତାର ଆଖିବୁଜା ଦୌଡ଼ରେ ଆମେ ନିରନ୍ତର ଗଙ୍ଗାକୁ ପ୍ରଦୁଷିତ କରି ଆସୁଛି । କେମିତି ?

୧) ଗଙ୍ଗା ଉପରେ ବନ୍ଧ ବାନ୍ଧିବା ଫଳରେ ଭୂକ୍ଷରଣ ହେଇଛି । ବୃକ୍ଷର ରକ୍ଷାକବଚ ନଷ୍ଟ ହେଇଛି ।

୨) ଗଙ୍ଗା ନଦୀର କୂଳେ କୂଳେ ବିଭିନ୍ନ କଳକାରାଖାନା ସ୍ଥାପନ କରି ତା'ର ସମସ୍ତ ଆବର୍ଜନାକୁ ଗଙ୍ଗାନଦୀକୁ ଛାଡ଼ିଦେଉଛୁ ।

୩) ଜନସଂଖ୍ୟା ଅତି ଦ୍ରୁତଗତିରେ ବୃଦ୍ଧିପାଇବାରୁ ଗଙ୍ଗା କୂଳେ କୂଳେ ଜବରଦଖଲ ବଢ଼ିଚାଲିଛି, ଯାହାକୁ ନିୟନ୍ତିତ କରାଯାଇ ପାରିଥା'ନ୍ତା । ଏଥିରେ ସେମାନେ ମଳମୂତ୍ର ଓ ଅଳିଆ ଆବର୍ଜନ, ପଚ୍ଚନଳପାଣି ଛାଡୁଛନ୍ତି । ଏହାଦ୍ୱାରା ଗଙ୍ଗାଜଳ ବିଷାକ୍ତ ହେଇଚାଲିଛି ।

୪) ଗଙ୍ଗାରେ ଆମେ 'ରିଭର ରେପିଟିଂ' କାମକୁ ଗୋଟାଏ ଦୁଃସାହସିକ କ୍ରିଡ଼ାର ପର୍ଯ୍ୟଟନ ନାମରେ କାର୍ଯ୍ୟ କରିଦେଇଛୁ । ମଦଠାରୁ ଆରମ୍ଭକରି ମାଂସାହାର କରୁଥିବା ଲୋକେ ବି ଗଙ୍ଗା କୂଳରେ ବସ୍ତିକରି ରହୁଛନ୍ତି । ଯାହା ବିଲକୁଲ ଉପଯୁକ୍ତ ନୁହେଁ । ଏହାକୁ ହଟେଇ ଦିଆଯାଇ ପାରନ୍ତା, କିନ୍ତୁ ଏହା ବଢ଼ିବଢ଼ି ଚାଲିଛି ।

୫) ସ୍ନାନ ଓ ମହାସ୍ନାନ- ମହାକୁମ୍ଭ ନାମରେ ଆମେ ହରିଦ୍ୱାର ଓ ପ୍ରୟାଗ କ୍ଷେତ୍ରକୁ ନିୟମିତ ଭାବେ ଗଙ୍ଗାଜଳକୁ ପ୍ରଦୁଷିତ କରିଚାଲିଛୁ । ସୋମବତୀ ଅମାବାସ୍ୟା, ମୌନୀ ଅମାବାସ୍ୟା, ସଂକ୍ରାନ୍ତି ଇତ୍ୟାଦି ଅନେକ ପର୍ବପର୍ବାଣୀ ରହିଛି । ଯେଉଁଥିରେ ଆମେ ଗଙ୍ଗରେ ଜରି, ଫୁଲ ଓ ବଳକା ଅନାବଶ୍ୟକ ପଦାର୍ଥ ପକାଇ ଦେଉଛୁ । ଆଜିଠାରୁ ପ୍ରାୟ ଶହେବର୍ଷ ଆଗରୁ ଗଙ୍ଗାରେ ସାବୁନ ଲଗାଇ ଗାଧୋଇବା ମନା ଥିଲା । ମାତ୍ର ଗୋଟିଏ ବୁଡ ହିଁ ସ୍ନାନପାଇଁ ଯଥେଷ୍ଟ ହେଉଥିଲା । ଆଜି ତ ପ୍ରତ୍ୟେକ ମଣିଷର ଅହଂକାର ଏବଂ ପହଁଚିବାର ସୋ, ସଉକ ହେଇଗଲାଣି । ଏହାକୁ ସୁଇମିଂପୁଲ୍ ମନେକରି ସେମାନେ ସ୍ୱେଚ୍ଛାଚାର କରୁଛନ୍ତି ।

ଗଙ୍ଗାନଦୀ ହରିଦ୍ୱାର ପର୍ଯ୍ୟନ୍ତ ଏତେ ପରିମାଣରେ ଦୂଷିତ ହେଇଯାଉଛି ଯେ, ସେଠାରେ ଜଳ ଆଚମନ କରିବାକୁ ବା ସେଥିରେ ବୁଡ଼ ଦେବାକୁ ବି ମନ ହେଉନାହିଁ । ଅଗଣିତ ଆଶ୍ରମ ଏଠାରୁ ଉପରେ ଥିବା ଗୋମୁଖ ପର୍ଯ୍ୟନ୍ତ ଲମ୍ବିଛି, କିନ୍ତୁ ଏଠରୁ ମଧ୍ୟ ସିଧା ସଳଖ ମଣିଷର ମଳମୂତ୍ର ଓ ଆବର୍ଜନା ଯାଇ ଗଙ୍ଗାରେ ମିଳୁଛି । ଆମ ମାଆକୁ ଆମେ କ'ଣ କରି ସାରିଲେଣି ? ତା'ର ବିକଳ ରୂପକୁ ଦେଖି ହେଉନି । ଉପର ମୁଣ୍ଡରେ ଯେଉଁ ଜଳପ୍ରପାତ ରହିଛି, ତାକୁ ବନ୍ଧବାନ୍ଧି ସେଠାରେ ବିଜୁଳି ଉତ୍ପାଦନ କେନ୍ଦ୍ରମାନ ପ୍ରତିଷ୍ଠା କରାଯାଇ ପାରନ୍ତା । ଯାହା ଆମର ବିଜୁଳିଶକ୍ତିର ଅଭାବକୁ ଦୂର କରିପାରନ୍ତା । କିନ୍ତୁ ଦୁର୍ଭାଗ୍ୟର କଥା, ଆମଦେଶର ନୀତି ନିର୍ଦ୍ଧାରିକ ତଥା ଯୋଜନା କରିବା ଲୋକ, ଶାସକ, ପ୍ରଶାସକ ଏ'ଦିଗରେ ବିମୁଖ । ଭବିଷ୍ୟତରେ ଗଙ୍ଗାନଦୀର ରୂପ କିଭଳି ହୋଇଯିବ, ସେକଥା କଳ୍ପନା ବି କରାଯାଇ ପାରୁନାହିଁ ।

ଗାୟତ୍ରୀ ପରିବାର ନିଜର ନିର୍ମଳ ଗଙ୍ଗା ଅଭିଯାନର ସଫଳତା ପାଇଁ ୨୫୨୫ କିଲୋମିଟର ଦୀର୍ଘ, ଗୋମୁଖରୁ ଗଙ୍ଗାସାଗର ପର୍ଯ୍ୟନ୍ତ ବ୍ୟାପ୍ତ ଅଞ୍ଚଳକୁ ପାଞ୍ଚୋଟି ଅଞ୍ଚଳରେ ବିଭାଜିତ କରିଛି । ଯଥା-

୧. ଭାଗୀରଥୀ ଅଞ୍ଚଳ, ଗୋମୁଖରୁ ହରିଦ୍ୱାର ।

୨ ବିଶ୍ୱାମିତ୍ର ଅଞ୍ଚଳ, ହରିଦ୍ୱାରରୁ କାନପୁର ।

୩. ଭରଦ୍ୱାଜ ଅଞ୍ଚଳ, କାନପୁରରୁ ବାଲିଆ ।

୪. ଗୌତମ ଅଞ୍ଚଳ, ବାଲିଆରୁ ସୁଲତାନଗଞ୍ଜ ।

୫. ରାମକୃଷ୍ଣ ଅଞ୍ଚଳ, ସୁଲତାନଗଞ୍ଜରୁ ଗଙ୍ଗାସାଗର ।

ଏହି ଅଭିଯାନକୁ ବି ପାଞ୍ଚଟି ପର୍ଯ୍ୟାୟ ବିଭକ୍ତ କରାଯାଇଛି ।

୧. ସଂପୂର୍ଣ୍ଣ ଗଙ୍ଗା ଘାଟିର ବ୍ୟାପକ ସର୍ବେକ୍ଷଣ ।

୨. 'ଗଙ୍ଗା ସମ୍ବାଦ' ଗଙ୍ଗାନଦୀର ବ୍ୟଥାକଥାର ଆୟୋଜନ, (ତଟୀୟ ଗ୍ରାମ ଓ ନଗରୀରେ)

୩. ଗଙ୍ଗା ଅମୃତକୁମ୍ଭ ଜାଗରଣ ଯାତ୍ରାରେ ଜନଜାଗରଣ, ସ୍ୱଚ୍ଛତା, ମଳମୂତ୍ର ବିସର୍ଜନ ନିଷେଧ, ବାୟୋଡ୍ରାୟଜେଷ୍ଟର ଟୟଲେଟ, ଗଙ୍ଗାନଦୀ କୂଳରେ ସବୁଜ ବୃକ୍ଷରୋପଣ ।

୪. ଜନସହଯୋଗ- ସହଭାଗିତା ଆନ୍ଦୋଳନ । ପୂରା ଅଞ୍ଚଳରେ ଗଙ୍ଗା ତଟକୁ ସଫା କରିବା, ଘାଟଗୁଡ଼ିକ ସଫା ସୁତର କରିବା, ସବୁଜ ବଳୟ ସୃଷ୍ଟଇ କରିବା । ପ୍ରତ୍ୟେକ ତଟରୁ ୨୦କିଲୋମିଟର ଦୂର ପର୍ଯ୍ୟନ୍ତ ଥିବା ଜନସାଧାରଣଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରିବା, ଆଇନ୍ କାନୁନ୍‌କୁ ପାଳନ କରିବାପାଇଁ ସହଯୋଗ ନେବା । ଗଙ୍ଗା ପ୍ରଜ୍ଞାମଣ୍ଡଳୀର ସ୍ଥାପନା କରିବା ।

୫. ଦଶବର୍ଷ ପର୍ଯ୍ୟନ୍ତ ନିରନ୍ତର ଶୁଦ୍ଧି ଏବଂ ସଂରକ୍ଷଣ ଉପରେ ଧ୍ୟାନ କେନ୍ଦ୍ରିତ କରିବାକୁ ହେବ । କେବଳ ଗଙ୍ଗାନଦୀ ନୁହେଁ, ଏହାର ସହାୟକ ସବୁ ନଦୀକୁ ବି ଏଥିରେ ସାମିଲ କରିବାକୁ ହେବ । ଏଥିପାଇଁ ଦଶଲକ୍ଷ ସ୍ୱୟଂସେବକ ଓ କର୍ମକର୍ତ୍ତାଙ୍କର ଶ୍ରମଦାନ ଦରକାର ।

ଏହି ପାଞ୍ଚଟି ପ୍ରୟାସ ମାଧ୍ୟମରେ ଗଙ୍ଗାଜଳ ଶୁଦ୍ଧ ହେବ । ସଂପୂର୍ଣ୍ଣ ଗଙ୍ଗା ନିର୍ମଳ ହେବ । ପ୍ରତ୍ୟେକଙ୍କୁ ପ୍ରେରଣା ଦିଆଯିବ କି ସାବୁନ, ସାମ୍ପୁ, ବାସିଫୁଲ, ବ୍ୟବହୃତ ଦୀପ ଇତ୍ୟାଦିକୁ ଗଙ୍ଗାରେ ପକାନ୍ତୁ ନାହିଁ । ସରକାରୀ ସହଯୋଗ ନେବାକୁ ହେବ । ଅଦାଲତ ଆଦେଶ ମାଧ୍ୟମରେ ମଳମୂତ୍ର ଓ ନାଳର ପଚାପାଣିକୁ ଟ୍ରିଟ୍‌ମେଣ୍ଟ କରିବାର ବ୍ୟବସ୍ଥା କରିବାକୁ ହେବ । ଶିଳ୍ପପତିମାନଙ୍କର ଏବଂ ଜନସାଧାରଣଙ୍କର ଭାଗିଦାରରେ ଏହି ସମସ୍ତ ଜଟିଳ କାମକୁ ସହଜରେ କରାଯାଇପାରିବ । ଜନଜାଗରଣ ପାଇଁ ଚଳଚିତ୍ର ପ୍ରଦର୍ଶନ, ପୋଷ୍ଟର, କାନ୍ଥଲେଖା, ପ୍ରଦର୍ଶନୀ, ପଥପ୍ରାନ୍ତ ନାଟକ, ଜନସଭା, ରେଡ଼ିଓ ଏବଂ ଟିଭି ମାଧ୍ୟମରେ ପ୍ରଚାର ପାଇଁ ବ୍ୟବସ୍ଥା କରାଯିବା ଦରକାର ।

ତଟଶୁଦ୍ଧି ପାଇଁ ନଦୀକୁ ବ୍ୟବହାର ନ କରି, ଡଷ୍ଟବିନ୍‌ର ବ୍ୟବସ୍ଥା, ତୀର୍ଥ ପୁରୋହିତଙ୍କୁ ଅଂଶୀଦାର କରି ପୁଣି ଦୂଷିତ ଜଳ ପ୍ରବନ୍ଧନ ପାଇଁ ତାଲିମ ନେଲେ ହିଁ ନଦୀଗୁଡ଼ିକ ନିର୍ମଳ ରହିପାରିବ । ଦୂଷିତ ଜଳ ଓ ଆବର୍ଜନା ଯେଭଳି ନଦୀରେ ନ'ପଶେ ସେଦିଗ ପ୍ରତି ଅଧିକ ଯତ୍ନଶୀଳ ହେବାକୁ ପଡିବ । ଯଦି ପ୍ରତ୍ୟେକ ତୀର୍ଥ ସ୍ଥଳରେ ଏହି ବ୍ୟବସ୍ଥା କରାଯାଇପାରିବ, ତେବେ ସବୁପ୍ରକାର ଅସମ୍ଭବ ମନେ ହେଉଥିବା କାର୍ଯ୍ୟ ସମ୍ଭବ ହେଇପାରିବ । ଗାୟତ୍ରୀ ପରିବାର ଚଳିତ ବର୍ଷ ଯୁବକ୍ରାନ୍ତି ବର୍ଷ ପାଳନ କରୁଛି । ଯୁବକମାନେ ଏବଂ ଦିୟାର ସଦସ୍ୟମାନଙ୍କୁ ବି ବିଭିନ୍ନ ସ୍ଥାନରେ

ଏଥିରେ ଭାଗୀଦାର ହେବାକୁ କୁହାଯାଉଛି । ଯଦି ବର୍ଷର ପନ୍ଦର ଦିନ ବି କିଛି ଲକ୍ଷ ଲୋକ ବାହାରନ୍ତି, ତେବେ ଏକାର୍ଯ୍ୟ ହେଇ ଚାଲିବ ।

ଜଳସଂରକ୍ଷଣ, ଜଳ ଭଣ୍ଡାର, ଅପରିଷ୍କାର ପାଣିର ସୁନିୟୋଜନ ତଥା ଶ୍ରୀରାମ ସରୋବରର ସ୍ଥାପନା ଏହି ଅଭିଯାନକୁ ତୀବ୍ରଗତିରେ ଆଗେଇ ନେଇଯିବ । କାରଣ ଅନ୍ତତଃ ଏହାର ଲାଭ ଏହି ଯୋଜନାକୁ ହିଁ ମିଳିବ । ଯଦି ଆମେ ସତରେ ସଂକଳ୍ପିତ ହେଇଯିବା, ତେବେ ଅଖଣ୍ଡ ଦୀପର ଶତାବ୍ଦୀ (୨୦୨୬) ଏବଂ ପରମ ବନ୍ଦନୀୟା ମାତାଜୀଙ୍କ ଜନ୍ମ ଶତାବ୍ଦୀ (୨୦୨୬) ମଧ୍ୟରେ ଏହି କାର୍ଯ୍ୟ ପୂର୍ଣ୍ଣ କରାଯାଇପାରିବ । ମାଆ ଗଙ୍ଗାଙ୍କ ବରଦାନ, ଅନୁଦାନ ସେମାନଙ୍କୁ ମିଳିବ, ଯେଉଁମାନେ ଏହି ପୁଣ୍ୟକାର୍ଯ୍ୟରେ ଭାଗୀରଥୀ ପୁରୁଷାର୍ଥ କରିବେ ଓ ଭାଗୀଦାରୀ ହେବେ ।



ଗୋପାଳ କୃଷ୍ଣ ଗୋଖେଲ

# ବୃକ୍ଷଗଙ୍ଗା ଅଭିଯାନର ବିବିଧ ପ୍ରୟୋଗ

**୧. ଶ୍ରୀରାମ ସ୍ମୃତି ଉପବନ :-**

ପୂଜ୍ୟ ଆଚାର୍ଯ୍ୟଙ୍କ ନାମରୁ ୨୪୦୦ ଶ୍ରୀରାମ ସ୍ମୃତି ଉପବନ ସୃଷ୍ଟି କରିବାର ସଂକଳ୍ପ ଗ୍ରହଣ କରାଯାଇଛି । ବୃକ୍ଷଗଙ୍ଗା ଅଭିଯାନ ବିଭିନ୍ନ ସହର-ନଗରର ସାର୍ବଜନୀନ ସ୍ଥାନ ପାଇଁ ବହୁତ ଉପଯୋଗୀ ରଚନାତ୍ମକ ପ୍ରକଳ୍ପ । ଏହାଦ୍ୱାରା ମାନବ ସମାଜକୁ ଭଲ ସ୍ୱାସ୍ଥ୍ୟ, ସୁସ୍ଥ ବାତାବରଣ ସଂବର୍ଦ୍ଧନ ଏବଂ ସ୍ମୃତି ଉପବନର ସଂଚାଳନ କରୁଥିବା ଲୋକ ବା ଅନୁଷ୍ଠାନକୁ ସ୍ୱାବଲମ୍ବନତା ବି ମିଳିଯାଉଛି । ସ୍ମୃତି ଉପବନର ବିଧିବଦ୍ଧ ସ୍ୱରୂପ ସ୍ଥିର କରାଯାଇଛି । ଏଥିରେ ଆକ୍ୟୁପ୍ରେସର ମାର୍ଗ, ପ୍ରାକୃତିକ ଆହାର, ପକ୍ଷୀ ଆହାର ଗୃହ, ସାଧନା କେନ୍ଦ୍ର, ଔଷଧୀୟ ବୃକ୍ଷ ବଗିଚା, ଗ୍ରହ-ନକ୍ଷତ୍ର-ରାଶି ବଗିଚା ଭଳି ଶାରୀରିକ, ମାନସିକ ସ୍ୱାସ୍ଥ୍ୟବର୍ଦ୍ଧକ କାର୍ଯ୍ୟକ୍ରମକୁ ଯୋଗ କରାଯାଇଛି । ଶାନ୍ତିକୁଞ୍ଜ, ହରିଦ୍ୱାର ସ୍ଥିତ ଦେବ ସଂସ୍କୃତି ବିଶ୍ୱ ବିଦ୍ୟାଳୟରେ ଏହାର ଏକ ପ୍ରାରୂପ ପ୍ରସ୍ତୁତ କରାଯାଇଛି । ଯାହାକୁ ଦେଖି ବିଭିନ୍ନ ସ୍ଥାନରେ ଏହିଭଳି ଉପବନ ପ୍ରତିଷ୍ଠା କରାଯାଉଛି ।

**୧. ଉପବନ ଘଟକ-** ଆକ୍ୟୁପ୍ରେସର ପଥ, ପିରାମିଡ୍ ଯଜ୍ଞଶାଳା, ବାସ୍ତୁବୃକ୍ଷ ମଣ୍ଡଳ, ନବଗ୍ରହ ବୃକ୍ଷମଣ୍ଡଳ, ଦେବବୃକ୍ଷ, କଳ୍ପବୃକ୍ଷ, ହରିଶଙ୍କରୀ, ତ୍ରିବେଣୀ, ପକ୍ଷୀବିହାର, ଜଓ୍ୱାର ବଗିଚା, ଧ୍ୟାନ-ପ୍ରାଣାୟାମ ସ୍ଥଳ, ପ୍ରାକୃତିକ ଆହାର କେନ୍ଦ୍ର ।

**୨. ଆକ୍ୟୁପ୍ରେସର ପଥ-** ପ୍ରତ୍ୟେକ ରାସ୍ତାରେ ପ୍ରତିଦିନ ସକାଳ ସନ୍ଧ୍ୟାରେ ଖାଲି ପେଟରେ ଗଭୀର ଶ୍ୱାସ - ପ୍ରକ୍ରିୟା ସହିତ ଖାଲି ପାଦରେ ଦଶରୁ ପନ୍ଦର ମିନିଟ ଚାଲିବାଦ୍ୱାରା ପାଦର ଶାରୀରିକ ଅଙ୍ଗ ଅବୟବ ସକ୍ରିୟ ହୋଇଯାଏ । ଫଳରେ ଶରୀର ସୁସ୍ଥ ହୋଇଯାଏ । ମୌନ ରହି ଧୀରେ ଧୀରେ ଚାଲିବା ଫଳରେ ଅଧିକ ଲାଭ ମିଳେ ।

୩. ସ୍ୱାସ୍ଥ୍ୟ ସଂବର୍ଦ୍ଧକ ଦିବ୍ୟ ଔଷଧ-

ଆଜି ଯେତେବେଳେ ଆମେ ସ୍ୱାସ୍ଥ୍ୟବର୍ଦ୍ଧକ ବାୟୁ ସେବନ ପାଇଁ ମର୍ଣ୍ଣିଂ ଓ ଇଭିନିଂଓ୍ୱାକ୍ କରାଯାଉଛି । ସେତିକିବେଳେ ହିଁ ଆମେ ରାସ୍ତାର ଗାଡ଼ିଧୂଆଁ କାର୍ବନଯୁକ୍ତ ବାୟୁ ବା ରାସ୍ତାପାଖ ଅଳିଆଗଦାର ଗନ୍ଧ ବାୟୁ ମଧ୍ୟ ପାଇଥାଉଁ, କିନ୍ତୁ ଏଠାରେ ସ୍ୱାସ୍ଥ୍ୟ ବଗିଚାରେ ଲଗାଯାଇଥିବା ଔଷଧୀୟ ବୃକ୍ଷ ତା'ର ପୋଷଣଦ୍ୱାରା ଏଠାକାର ବାତାବରଣକୁ ପ୍ରାଣତତ୍ତ୍ୱରେ ଭରିଦେଇଥାଏ । ଯାହା ଆମପାଇଁ ସ୍ୱାସ୍ଥ୍ୟବର୍ଦ୍ଧକ ହୋଇଥାଏ । ଏଠାକୁ ଆସୁଥିବା ଲୋକଙ୍କୁ ଆକ୍ୟୁପ୍ରେସର ପଥରେ ବୁଲିବା ସମୟରେ ତାହା ମଧ୍ୟ ଶ୍ୱାସ ପ୍ରଶ୍ୱାସଦ୍ୱାରା ମିଳିଥାଏ । ଯଦ୍ୱାରା ସମ୍ପୂର୍ଣ୍ଣ ସ୍ୱାସ୍ଥ୍ୟ ସଂବର୍ଦ୍ଧନ ହୋଇଥାଏ । ଜୀବନରେ ସକାରାତ୍ମକ ଶକ୍ତି ବଢ଼େ । ଏହାଦ୍ୱାରା ଜୀବନ ସୁଖୀ ଓ ସମୃଦ୍ଧ ହୁଏ । ସାତ୍ୱିକ ଶକ୍ତି ଉତ୍ପନ୍ନ କରୁଥିବା ଦିବ୍ୟବୃକ୍ଷ ସମୂହ ଏଠାର ସ୍ୱାସ୍ଥ୍ୟ ବଗିଚା ମଧ୍ୟରେ ଅବସ୍ଥିତ । ବିଭିନ୍ନ ବୃକ୍ଷ ସମୁହ ଯଥା-ନବଗ୍ରହ ବାଟିକା, ରାଶି ବାଟିକା ଇତ୍ୟାଦି ଅନେକ ଦିବ୍ୟ ଔଷଧୀୟ ବୃକ୍ଷ ସମୁହ ଏଠାରେ ମଧ୍ୟ ଲଗାଯାଉଛି । ଆକ୍ୟୁପ୍ରେସର ପଥ ଉପରେ ଭ୍ରମଣ ସମୟରେ ଆମେ ଏହି ଦିବ୍ୟବୃକ୍ଷ ସମୁହକୁ ପରିକ୍ରମ କରିଥାଉ । ଯାହାଦ୍ୱାରା ଆମେ ଏହାର ସାତ୍ୱିକ ଶକ୍ତି ସମ୍ପର୍କରେ ଆସିଥାଉ । ଏଥିରେ ସାତ୍ୱିକ ଭାବ ସୃଷ୍ଟି ହୁଏ । ମାନସିକ ଶାନ୍ତି ପ୍ରାପ୍ତ ହୋଇଥାଏ । ତା' ସହିତ ଆମର ଗ୍ରହ-ନକ୍ଷତ୍ର ସମ୍ବନ୍ଧୀୟ ସମସ୍ୟା ଗୁଡ଼ିକର ନିରାକରଣ ବି ହୁଏ ।

**୪. ଧ୍ୟାନ କେନ୍ଦ୍ର-** ଆଜିର ଜୀବନ ଶୈଳୀର ପ୍ରଭାବରେ ଯେଉଁ ମାନସିକ ଉତ୍ତେଜନା ଟେନ୍‌ସନ ସୃଷ୍ଟିହୁଏ ସେଥିରୁ ମୁକ୍ତିପାଇଁ ମାନସିକ ଶାନ୍ତିପାଇଁ ଓ ନିଜ ଅନ୍ତର୍ନିହିତ ଦିବ୍ୟତାର ଅନୁଭୂତି ଉଦ୍ଦେଶ୍ୟରେ ଏହି ପ୍ରକଳ୍ପ ଏକ ଅଭିନବ ପ୍ରଚେଷ୍ଟା ।

**୫. ଯୋଗସ୍ଥଳ-** ଯୋଗକରି ନୀରୋଗ ରୁହନ୍ତୁ । ପ୍ରକୃତି ସାନ୍ନିଧ୍ୟରେ ସାମୁହିକ ଓ ବ୍ୟକ୍ତିଗତ ଭାବେ ଆସନ ପ୍ରାଣାୟାମ କରିବାପାଇଁ ଯୋଗସ୍ଥଳ ରହିଥାଏ । ସର୍ବାଙ୍ଗ ଯୋଗ, ପ୍ରଜ୍ଞାଯୋଗର ପ୍ରଶିକ୍ଷଣ ବି ଦିଆଯାଏ ।

**୬. ସଙ୍ଗୀତ ଚିକିତ୍ସା-** ସ୍ୱାସ୍ଥ୍ୟ ଉପବନରେ ବିଭିନ୍ନ ମଧୁର ଧ୍ୱନି ଉପରେ ଆଧାରିତ ସଂଗୀତ ଏବଂ ମନ୍ତ୍ରର ସ୍ୱର ଲହରୀରେ ତନ-ମନକୁ ଚହଲାଇଦେଇ ଆନନ୍ଦ ଏବଂ ଉଲ୍ଲାସ ଜାଗ୍ରତ କରାଏ ।

୭. **ପିରାମିଡ଼ିୟ ଯଜ୍ଞଶାଳା (ଯଜ୍ଞଚିକିତ୍ସା)-** ଶରୀରକୁ ସମସ୍ତ ପ୍ରକାର ରୋଗରୁଣରୁ ମୁକ୍ତ ରଖିବା, ମନୋରୋଗ ଗୁଡ଼ିକରୁ ମୁକ୍ତି ପାଇବାପାଇଁ ଏବଂ ନିଜ ଜୀବନୀ ଶକ୍ତିକୁ ବୃଦ୍ଧି କରିବାପାଇଁ ଯଜ୍ଞର ଭୂମିକା ଅତ୍ୟନ୍ତ ମହତ୍ୱପୂର୍ଣ୍ଣ । ଯଜ୍ଞାଗ୍ନିଦ୍ୱାରା ଯଜ୍ଞ ଆହୂତି ସାମଗ୍ରୀର ଦିବ୍ୟ ଜଡ଼ିବୁଟିର ଶକ୍ତି ହଜାରଗୁଣ ହେଇ ଶ୍ୱସନ ତନ୍ତ୍ର ଓ ତ୍ୱଚର ମାଧ୍ୟମରେ ତୁରନ୍ତ ସଂପୂର୍ଣ୍ଣ ଶରୀରକୁ ପ୍ରାପ୍ତ ହୋଇଥାଏ । ସ୍ୱାସ୍ଥ୍ୟ ଉପବନରେ ଏ'ପ୍ରକାର ପ୍ରକଳ୍ପ ଯଜ୍ଞ ଚିକିତ୍ସା ପାଇଁ ପ୍ରସ୍ତୁତ କରାଯାଉଛି ।

୮ **ମାତା ଭଗବତୀ ପ୍ରାକୃତିକ ଆହାର କେନ୍ଦ୍ର-** ମଣିଷ ଜୀବନରେ ଅଧିକାଂଶ ବେମାରୀର କାରଣ, ଅନିୟମିତ ଆହାର-ବିହାର ହୋଇଥାଏ । ଆଧୁନିକ ଖାଦ୍ୟ ଫାଷ୍ଟଫୁଡ୍ ଚାରିଆଡ଼େ ବିକ୍ଷିପ୍ତ ଭାବରେ ମିଳୁଛି । କିନ୍ତୁ ସ୍ୱାସ୍ଥ୍ୟବର୍ଦ୍ଧକ ଆହାର ଓ ପାନୀୟ ପ୍ରାୟ ମିଳିପାରୁନାହିଁ । ସେଥିପାଇଁ ଆମେ ଏଠାରେ ନିଜର ସ୍ୱାସ୍ଥ୍ୟ ସଂବର୍ଦ୍ଧନ ପାଇଁ, ଲାଉ, କଲରା, ପାଳଙ୍ଗଶାଗ, ଟମାଟୋ, ଗାଜର, ଅଁଳା, ଏଲୋବେରା ପ୍ରଭୃତି ଉପଲବ୍ଧତା ଅନୁସାରେ ଉପଲବ୍ଧ କରିପାରୁ । ଯେଉଁ ଘରେ ପ୍ରତିଦିନ ଏହାକୁ ବ୍ୟବହାର କରିବାକୁ ମିଳିପାରୁ ନାହିଁ, ସେମାନେ ତୁରନ୍ତ ଫାଷ୍ଟଫୁଡ୍‌କୁ ଉପଯୋଗ କରନ୍ତି । ଫଳରେ ନିଜପାଇଁ ରୋଗକୁ ଆମନ୍ତ୍ରଣ କରିଦିଅନ୍ତି ।

**ଜାଓ୍ୱାରା ରସ-** ଏହାକୁ ପ୍ରକୃତି ପ୍ରଦତ୍ତ ଗ୍ରୀନ୍ ବ୍ଲଡ଼ କୁହାଯାଏ । ଯାହା ଆମ ଶରୀରରେ ହିମୋଗ୍ଲୋବିନ୍‌କୁ ବଢ଼ାଇଥାଏ । ରୋଗ ପ୍ରତିରୋଧକ ଶକ୍ତିକୁ ମଧ୍ୟ ବଢ଼ାଇଥାଏ । ମୋଟାପଣକୁ କମାଇ ରକ୍ତଚାପକୁ ନିୟନ୍ତ୍ରଣ କରେ । ତ୍ୱଚାକୁ ନରମ ରଖେ । ମହିଳାମାନଙ୍କର ରୋଗପାଇଁ ଏହା ଅତ୍ୟନ୍ତ ଲାଭଦାୟକ ହୋଇଥାଏ । ଏଥିରେ ଥିବା ବି-୧୭ ଭିଟାମିନ କ୍ୟାନ୍‌ସର ରୋଗପାଇଁ ମଧ୍ୟ ଉପକାରୀ ହୋଇଥାଏ ।

**ଅଁଳାରସ-** ବାତ, ପିତ, କଫ ନାଶକ ତଥା ସମସ୍ତ ବିକାରକୁ ଦୂର କରିବା ପାଇଁ ଅଁଳା ରସ ସକ୍ଷମ । ଏହା କେଶବର୍ଦ୍ଧକ, ଚକ୍ଷୁରୋଗ ଦୂରକରି ଜ୍ୟୋତି ବଢ଼ାଇବା ଦିଗରେ ଏହା ଲାଭକାରୀ ହୋଇଥାଏ । କୋଷ୍ଠକାଠିଣ୍ୟ, ରକ୍ତବିକାର, ଏସିଡ଼ିଟି, ଅଲସ୍ୱର ଇତ୍ୟାଦି ରୋଗ ପାଇଁ ଅତ୍ୟନ୍ତ ଲାଭଦାୟକ ହୋଇଥାଏ ଅଁଳା ରସ ।

**ଏଲୋବେରା ରସ-** ଏଲୋବେରା ରସ ଶରୀରଗତ ସମସ୍ତ ରୋଗଗୁଣକୁ ବାହାରକରି ପୂର୍ଣ୍ଣ ଆରୋଗ୍ୟ କରିଥାଏ । ଏଲର୍ଜୀକୁ ଅଟକାଇ ଦେଇଥାଏ । ପେଟ ରୋଗ, ଗ୍ୟାସ ତଥା ମଧୁମେହ ରୋଗକୁ ଠିକ୍ କରିଦେଇଥାଏ । କୋଲଷ୍ଟ୍ରେଲକୁ

ନିୟନ୍ତ୍ରଣ କରିଦିଏ । ଲିଭର-କିଡ୍‌ନୀରେ ଥିବା ବିକାରକୁ ଦୂର କରେ । H.I.V. ସଂକ୍ରମଣକୁ ମଧ୍ୟ ଅଟକାଇଥାଏ । ସୋରାୟସିସ୍ ଓ କ୍ୟାନ୍‌ସର ଭଳି ଅସାଧ୍ୟ ରୋଗ ପାଇଁ ମଧ୍ୟ ଏଲୋବେରାର ଉପଯୋଗ କରାଯାଏ ।

**ଲାଉ ରସ** - ଅନେକ ପ୍ରକାର ଔଷଧୀୟ ଗୁଣ ଲାଉ ରସରେ ଥାଏ । ଯାହା ହୃଦରୋଗ, ଅନିଦ୍ରା, ମୁତ୍ରରୋଗ, ଲିଭର ସମ୍ବନ୍ଧୀୟ ରୋଗ, କାନ ଦରଜ, ଚକ୍ଷୁରୋଗ ଓ ମଧୁମେହ ରୋଗ ପ୍ରଭୃତି ପାଇଁ ଅତ୍ୟନ୍ତ ଗୁଣକାରୀ ।

**କଲରା ରସ**- କଲାରା ରସ ମଧୁମେହ ରୋଗ ପାଇଁ ରାମବାଣ ପରି ଔଷଧୀ । ଏହା ପେଟରୋଗ, ଅର୍ଶ, ହଇଜା, ପୋଲିଓ, ଗଣ୍ଠିରୋଗ, ରକ୍ତ ଏବଂ ଚର୍ମରୋଗ ଇତ୍ୟାଦି ପାଇଁ ଲାଭଦାୟକ ।

**ପାଳଙ୍ଗ ଶାଗ ରସ**- ରକ୍ତ ସମ୍ବନ୍ଧୀୟ ସମସ୍ତ ରୋଗ, ପେଟ ସମ୍ବନ୍ଧୀୟ ରୋଗ, ଚେହେରାର ସୁନ୍ଦରତା ବଢ଼ାଇବା, ମଧୁମେହ ରୋଗ, ମୋଟାପଣ, ଦାନ୍ତ ଏବଂ କୋଷ୍ଠକାଠିଣ୍ୟ ରୋଗପାଇଁ ଗୁଣକାରୀ ।

**ବିଟ୍ ରସ**- ଏଥିରେ ବିଟିନ୍ ତତ୍ତ୍ୱ ରହିଥାଏ । ଯାହା ଶରୀରର କ୍ୟାନ୍‌ସର ତଥା ଟ୍ୟୁମର କରିବାକୁ ଦିଏନାହିଁ । ଅର୍ଶ ଓ କୋଷ୍ଠକାଠିଣ୍ୟ ରୋଗପାଇଁ ଅତ୍ୟନ୍ତ ଉପଯୋଗୀ । ଏନିମିଆ ବା ରକ୍ତ ଅଭାବ ରୋଗକୁ ଠିକ୍ କରେ । ସ୍ମରଣଶକ୍ତିକୁ ବୃଦ୍ଧି କରାଇଥାଏ । ମାନସିକ ଦୁର୍ବଳତାକୁ ମଧ୍ୟ ଦୂର କରିଥାଏ ।

**ଗାଜର ରସ**- ଆଖିର ଜ୍ୟୋତି ବଢ଼ାଇବା, ତ୍ୱଚାକୁ ସୁନ୍ଦର କୋମଳ କରିବା ଓ ରକ୍ତଶୋଧକ ଭାବେ ଗାଜର ରସ କାମ କରିଥାଏ ।

**ନଡ଼ିଆ ଦୁଧ**- ନଡ଼ିଆଦୁଧ ଶରୀରକୁ ଶକ୍ତି ପ୍ରଦାନ କରିଥାଏ । ଟି.ବି.ଓ. ସୁଖାରୋଗକୁ ନଷ୍ଟ କରିଥାଏ । ଶୁଖିଲା କାଶ, ଗଳାରେ ଜଳାପୋଡ଼ା ଓ ଛାତି ଦରଜ ପାଇଁ ଏହା ଅତ୍ୟନ୍ତ ଉପକାରୀ ।

**ଲେମ୍ବୁ-ମଧୁ ପାଣି**- ଏହା ରକ୍ତର ହିମୋଗ୍ଲୋବିନ୍‌କୁ ବଢ଼ାଏ । ଶରୀରକୁ ସୁନ୍ଦର ଓ ସୁଡ଼ୋଳ କରେ । ରକ୍ତରେ କୋଲଷ୍ଟ୍ରେଲକୁ ବାହାର କରିଦିଏ । ଚର୍ବି କମାଇ ମୋଟାପଣରୁ ରକ୍ଷା କରେ ।

**ଅଙ୍କୁରିତ ଅନ୍ନ-** ପେଟର ସମସ୍ତ ବିକାରକୁ ଦୂର କରିଥାଏ । ଭିଟାମିନ-A, E ଓ K ର ଏହା ହେଉଛି ମୁଖ୍ୟ ଉତ୍ସ । ଏହାକୁ ନିୟମିତ ସେବନ କଲେ, ପୁରୁଷମାନଙ୍କର ନପୁଂସକତା ଓ ମହିଳାମାନଙ୍କର ବାଂଝ ଦୋଷ ଦୂର ହେଇଥାଏ ।

**ଫଳ ସଲାଦ୍-** ବିଭିନ୍ନ ଫଳରେ ପ୍ରସ୍ତୁତ ସଲାଦରୁ ଭିଟାମିନ୍ ଏବଂ ଖଣିଜ ତତ୍ତ୍ୱ ମିଳିଥାଏ । ଏହା ବିଭିନ୍ନ ପ୍ରକାର ବେମାରକୁ ଦୂରେଇ ରଖେ । କୋଷ୍ଠକାଠିଣ୍ୟ ଓ ମୋଟାପଣକୁ ମଧ୍ୟ ଦୂର କରେ । ଏହାକୁ ପ୍ରତିଦିନ ଖାଇବା ଫଳରେ ଆମକୁ ପ୍ରାକୃତିକ ସର୍କରା ମିଳିଥାଏ । ଶରୀରକୁ ପୂର୍ଣ୍ଣ ସୁସ୍ଥ ରଖେ । ଶରୀର ଫୁର୍ତ୍ତି ରହେ । ମୁଖମଣ୍ଡଳ ସୁନ୍ଦର ଓ ଶରୀର ସୁଢ଼ୋଳ ହୁଏ ।

**ଉପଲବ୍ଧି-** ପରିବେଶ ସୁରକ୍ଷା, ସ୍ୱାସ୍ଥ୍ୟ ସଂବର୍ଦ୍ଧନ, ସ୍ୱାବଲମ୍ବନ, ଆୟୁର୍ବେଦ ଔଷଧର ଉପଯୋଗିତା, ସୂଚନା ଓ ଜାଗରଣ ।

ଶ୍ରୀରାମ ସ୍ମୃତି ଉପବନକୁ ସହର-ନଗର ବିଭିନ୍ନ ବସ୍ତି ମଝିରେ ବିକଶିତ କରାଯାଇ ପାରିବ । ସର୍ବସାଧାରଣ ସ୍ଥାନ ବା ନିଜ ଉଦ୍ୟାନରେ ବା ସ୍ୱତନ୍ତ୍ର ଭାବରେ ଜମିକିଣି ସେଥିରେ ମଧ୍ୟ ଏହି ଔଷଧୀୟ ବୃକ୍ଷ ରୋପଣ କରାଯାଇପାରେ । ଏହାକୁ ବ୍ୟକ୍ତିଗତ ଭାବରେ ବା କୌଣସି ସଂସ୍ଥାର ସହଯୋଗରେ ମଧ୍ୟ କରାଯାଇପାରିବ ।

**୨. ଶ୍ରୀରାମ ସ୍ମୃତି ବନ ପର୍ବତ-**

ମଧ୍ୟପ୍ରଦେଶ ସହିତ ଅନେକ ଅଞ୍ଚଳରେ କେତେ ପାହାଡ଼ ଓ ଭୂଖଣ୍ଡକୁ ନେଇ ଗାୟତ୍ରୀ ପରିବାରର ସ୍ଥାନୀୟ ଶାଖାମାନେ ତାକୁ ସବୁଜ ସୁନ୍ଦର କରିଦେଇଛନ୍ତି । ସରକାରଙ୍କଠାରୁ ଅନୁମତି ଏବଂ ସହଯୋଗ ପାଇ ଏଭଳି ପ୍ରୟାସ ପ୍ରତ୍ୟେକ ଅଞ୍ଚଳରେ କରାଯାଇପାରିବ ।

**୩. ଶ୍ରୀରାମ ସ୍ମୃତି ବାଟିକା-**

ଆଗକାଳରେ ପ୍ରାୟ ପ୍ରତ୍ୟେକ ପରିବାରର ନିଜସ୍ୱ ଛୋଟ ବଡ଼ ବଗିଚା ରହୁଥିଲା । ସେଥିରେ ଆମ୍ବ, କଦଳୀ, ପିଜୁଳି, ଅମୃତଭଣ୍ଡା, ଜାମୁକୋଳି, ଲେମ୍ବୁ ସହିତ ଅନେକ ପ୍ରକାର ଆଞ୍ଚଳିକ ଫଳ ବୃକ୍ଷ ରହୁଥିଲା । ଏହି ପରମ୍ପରାକୁ ପୁନଃ ପ୍ରଚଳନ କରାଯାଉ । ଗ୍ରାମକୁ ଲାଗି ଖାଲିଥିବା ଛୋଟ ଜାଗାରେ ମଧ୍ୟ ଏଭଳି ଫଳ ବଗିଚା କରାଯାଇ ପାରିବ । ଯେଉଁଠି ସ୍ୱାସ୍ଥ୍ୟ ସଂବର୍ଦ୍ଧନ, ପିଲାଙ୍କପାଇଁ ଖେଳିବା ସୁଯୋଗ, ସଂସ୍କାର ସାଧନା ଇତ୍ୟାଦିର ସୁବିଧା ମଧ୍ୟ ଉପଲବ୍ଧ ଥିବ ।

୪. କୁଣ୍ଡରେ ସ୍ୱାସ୍ଥ୍ୟ-

ଆଜିକାଲି ସହର ବଜାରରେ ରହୁଥିବା ଲୋକେ ଗଛଟିଏ ଲଗାଇବାକୁ ଜାଗା ପାଉନାହାନ୍ତି । ସେମାନେ ମଧ୍ୟ ନିଜ ଅଗଣା ଓ ଘରଛାତ ଉପରେ କୁଣ୍ଡ ଥୋଇ ସେଥିରେ ମଧ୍ୟ ଶାଗ ବାଡ଼ି, ଔଷଧ ବଗିଚା କରି ସବୁଜତାକୁ ବଢ଼ାଇ ପାରିବେ । ଏଭଳି ପ୍ରୟୋଗ ସ୍ୱାସ୍ଥ୍ୟରକ୍ଷା ଏବଂ ଆର୍ଥିକ ଦୃଷ୍ଟିରୁ ମଧ୍ୟ ଲାଭଦାୟକ ହେବ । ନିଜେ ତାଜା ଏବଂ ଶୁଦ୍ଧ ପନିପରିବା ଓ ଶାଗସବ୍‌ଜୀ ସହଜରେ ପାଇପାରିବେ ।

୫. ଏକଲକ୍ଷ ସୀତାବାଟିକା-

ଆମର ପୂଜ୍ୟ ଗୁରୁଦେବ ତାଙ୍କର "ହମାରି ବସିୟତ ଔର ବିରାସତ" ନାମକ ପୁସ୍ତକର ପୃଷ୍ଠା- ୧ ୯ ୧ରେ ଲେଖିଛନ୍ତି- ପାଞ୍ଚଟି ସଂକଳ୍ପର କଥା, ଯଥା- ୧. ଏକଲକ୍ଷ ଯଜ୍ଞ, ୨ ଏକଲକ୍ଷ ନରରତ୍ନ, ୩. ଏକଲକ୍ଷ ସୀତା ଅଶୋକ ବାଟିକା, ୪. ଏକଲକ୍ଷ ଗ୍ରାମତୀର୍ଥ, ୫. ଏକଲକ୍ଷ ବର୍ଷର ସମୟଦାନ ସଂକଳନ । ଏହି ସମସ୍ତ କାର୍ଯ୍ୟକୁ ପୂର୍ଣ୍ଣ କରିବାପାଇଁ ଗାୟତ୍ରୀ ପରିବାର ଆଗେଇ ଆସିଛି । ଶକ୍ତିପୀଠରେ ନିଜ ଘରର ଆଖପାଖରେ ଅଧିକରୁ ଅଧିକ ଅଶୋକ ବୃକ୍ଷକୁ ରୋପଣ କରିବାକୁ ହେବ । ଅଶୋକ ବୃକ୍ଷର ନିଜସ୍ୱ ବିଶେଷ ମହତ୍ୱ ରହିଛି । ସୀତାମାତାଙ୍କୁ ଆଶ୍ରମ ଅଶୋକ ବାଟିକାରେ ମିଳିଥିଲା । ମହାବୀର ହନୁମାନ ବି ସେହି ବୃକ୍ଷର ଡାଳରେ ଆଶ୍ରୟ ନେଇଥିଲେ । ଆୟୁର୍ବେଦରେ ମହିଳା ରୋଗପାଇଁ ଏହାକୁ ଅବ୍ୟର୍ଥ ଔଷଧ କୁହାଯାଏ । ପୁରୁଷମାନଙ୍କୁ ବଳିଷ୍ଠ ଓ ଶକ୍ତିମାନ ତଥା ପ୍ରଖର ବୁଦ୍ଧି ସଂପନ୍ନ କରିବାପାଇଁ ଅଶୋକ ବୃକ୍ଷର ବିଶେଷ ଶକ୍ତି ରହିଛି । ସାଧନାପାଇଁ ମଧ୍ୟ ଅଶୋକବନର ତଳକୁ ଅତି ଉପଯୋଗୀ ସ୍ଥାନଭାବେ ଗ୍ରହଣ କରାଯାଇପାରେ । ଅଶୋକ ବନର ଶୋଭା ତ ସେମିତି ରମଣୀୟ ହୋଇଥାଏ ।

୬. ଔଷଧ ବଗିଚା-

ଶକ୍ତିପୀଠରେ ତୁଳସୀ, ପୋଦିନା, ଘିକୁଆଁରୀ, କାମମେଘ, ଚିରେଇତା, ଗୋକ୍ଷରୁ, ସଦାବିହାରୀ, ଅପାମାରଗ, ଲାଜକୁଳି, ଅଶ୍ୱଗନ୍ଧା, ପଥରଚୁର, ଗୁଡ଼୍‌ମାରୀ, ମନ୍ଦାର, ମେହେନ୍ଦୀ, କଳାତୁଳସୀ, କର୍ପୁର ତୁଳସୀ, ଅକରକରା, ପୁନର୍ନବା ଭଳି ଗଛଗୁଡ଼ିକ କୁଣ୍ଡ ବା ଗମଲାରେ କିମ୍ବା ନିଜର ସୁବିଧା ଥିଲେ ଭୂମି ଉପରେ ଲଗାଯାଇପାରିବ । ଏହାର ଔଷଧୀୟ ଗୁଣର ଗୋଟିଏ ତାଲିକା ସେଠାରେ ଲଗାଇ

ଦେଲେ, ଯିବା ଆସିବା କରୁଥିବା ଲୋକେ ଏବଂ ନିଜର ଆତ୍ମୀୟ-ପରିଜନମାନେ ଏହି ଗଛର ଗୁଣ ଏବଂ ଏହାର ଆବଶ୍ୟକତାକୁ ଜାଣି ପାରିବେ । ସେମାନେ ମଧ୍ୟ ସେଥିରୁ ପ୍ରେରଣା ପାଇ ନିଜ ନିଜ ବାଡ଼ି ବଗିଚା ବା କୁଣ୍ଡରେ ସେହି ଗଛ ଲଗାଇବାକୁ ଆଗ୍ରହୀ ହେବେ । ଯଦି ଘରର ଆଖପାଖରେ କୌଣସି ପାର୍କ ଥାଏ, ତେବେ ସେଥିରେ ନିମ୍ବ, ଅଶୋକ, କଂଚନ, ହରିଡ଼ା, ବାହାଡ଼ା, ଅଁଳା, ବେଲ, ହରସିଂହାର ଭଳି ବୃକ୍ଷମାନ ଲଗାଇବାର ବ୍ୟବସ୍ଥା କରାଯାଇପାରିବ । ଯେଉଁଥିରେ କି ଔଷଧୀୟଗୁଣ ଭରି ରହିଛି, ତା'ଦ୍ୱାରା ଅନ୍ୟମାନେ ବି ଉପକୃତ ହେଇପାରିବେ ।

**୭. ଶାଗ ବଗିଚା-**

ଯେଉଁମାନେ ଶାଗ ଖାଇବାକୁ ଭଲପାଆନ୍ତି, ପୁଣି ବଜାରରୁ ସାରଦିଆ ଶାଗ କିଣି ଖାଆନ୍ତି, ସେମାନେ ନିଜେ ଗୋଟିଏ ଶାଗ ବଗିଚା କରିପାରିବେ । ଯାହାର ଜାଗା ଅଛି, ସେମାନେ ପଟାଳି କରି ସୁନ୍ଦର ଛୋଟିଆ ଶାଗ ବଗିଚା ବା ଶାଗ ପଟାଳି ତିଆରି କରିପାରନ୍ତି । ଯେଉଁଠି ସେଭଳି ସୁବିଧା ନାହିଁ, ସେମାନେ କୁଣ୍ଡରେ ବା ଛାତ ଉପରେ ମାଟି ରଖି ଛୋଟିଆ ଶାଗ ପଟାଳି କରି ସେଥିରେ ଶୁଦ୍ଧ ଏବଂ ତାଜା ଶାଗ ପାଇପାରିବେ । ସେଥିରେ ରାସାୟନିକ ସାର ପରିବର୍ତ୍ତେ ଜୈବିକ ସାର, ଖତ ଦେବେ ।

**ଅଭିନବ ପ୍ରୟୋଗ-** ଗାୟତ୍ରୀ ପରିବାର ଲୋକମାନଙ୍କ ସହଯୋଗରେ ମଧ୍ୟ-ପ୍ରଦେଶରେ ପ୍ରାୟ ୭୫ଟି ଛୋଟବଡ଼ ଶୁଖିଲା ପାହାଡ଼ରେ ହଜାର ହଜାର ବୃକ୍ଷ ରୋପଣ କରି ସେ ଅଞ୍ଚଳକୁ ସବୁଜ ସୁନ୍ଦର କରିଦେଇଛନ୍ତି । ୨୦୦୭-୨୦୦୮ ମସିହାରେ ଯେଉଁ ପାହାଡ଼ ପ୍ରଥମେ ଧୂଷର ଦିଶୁଥିଲା, ତାହା ଆଜି ସବୁଜିମାରେ ଭରିଯାଇଛି ।

**କାର୍ଯ୍ୟ ସହଜ ନଥିଲା-** ଅଭିନବ ଉପାୟରେ କାର୍ଯ୍ୟ କରିବାକୁ ସଂକଳ୍ପ ନେଇଥିବା କର୍ମୀ ପ୍ରଥମେ ଗାଆଁ ଗାଆଁ ବୁଲି ସଭା-ସମିତିର ଆୟୋଜନ କଲେ । ଗ୍ରାମବାସୀଙ୍କ ମଧ୍ୟରେ ଚେତନା ଜାଗ୍ରତ କଲେ ଏବଂ କେତେଜଣ ଦମ୍ପତିଙ୍କୁ ତରୁପୁତ୍ର ଭାବେ ପାଳନ କରିବାକୁ ପ୍ରେରଣା ଦେଲେ । ତା'ପରେ ସଂକଳ୍ପ ସହିତ ଯେତେବେଳେ ଜନଚେତନା ମିଶିଗଲା, ଫଳରେ କେଉଁଠି ୧୧୦୦ ତ ପୁଣି କେଉଁଠି ୨୪୦୦ ଦମ୍ପତି ଏହି ଅଭିନବ କାର୍ଯ୍ୟକ୍ରମରେ ଯୋଗଦେବାରେ ଲାଗିଲେ । ବିଭିନ୍ନ ଜାତି, ଧର୍ମ, ବର୍ଣ୍ଣର ଲୋକେ ଏହି ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟକୁ ଆପଣେଇ ନେବାରେ ଲାଗି ପଡ଼ିଲେ ।

ଗ୍ରାମର ଉତ୍ସାହୀ ଯୁବକ-ଯୁବତୀମାନେ ଗୋଟିଏ ଗୋଟିଏ ସମିତି ଗଠନ କରି ଲୋକମାନଙ୍କୁ କାର୍ଯ୍ୟଯୋଜନା ସଂପର୍କରେ ବୁଝାଇଲେ । ଭବିଷ୍ୟତର କାର୍ଯ୍ୟପନ୍ଥା ଏବଂ ଗତିବିଧିକୁ ଲକ୍ଷ୍ୟ କରିବା ପାଇଁ କେତେଜଣ ଉତ୍ସାହୀ କର୍ମୀଙ୍କୁ ଦାୟିତ୍ୱ ଦିଆଗଲା । ଲୋକ ସମର୍ଥନ ଓ ସହଯୋଗରେ ଏଭଳି ଅସମ୍ଭବ କାର୍ଯ୍ୟ ସମ୍ଭବ ହେଲା, ଏହି କାର୍ଯ୍ୟକ୍ରମକୁ ତରୁପୁତ୍ର ମହାଯଜ୍ଞ ନାମରେ ସମସ୍ତେ ଜାଣନ୍ତି ।

ତରୁପୁତ୍ର ମହାଯଜ୍ଞର ପୂର୍ବ ପ୍ରକ୍ରିୟା-

ବୃକ୍ଷରୋପଣ ଦିନ ପୂର୍ବରୁ ମାଟିକୁ ଖୋଳି ପ୍ରସ୍ତୁତ କରାଯାଇଥାଏ । ବୃକ୍ଷରେ ଜଳସେଚନ ପାଇଁ ସମସ୍ତପ୍ରକାର ବ୍ୟବସ୍ଥା କରାଯାଏ । ଯେଉଁଠି ଜଳପାଇଁ କୌଣସି ବ୍ୟବସ୍ଥା ନଥାଏ, ସେଠାରେ ପାଣିଟାଙ୍କି ନେବାର ବ୍ୟବସ୍ଥା କରାଯାଏ । ଲୋକଙ୍କ ସହାୟତାରେ ଖୋଳାଯାଇଥିବା ଗାତରେ ଖତ ଭରି ଦିଆଯାଇଥାଏ । ସଂକଳ୍ପ ନେଇଥିବା ଦମ୍ପତ୍ତିଙ୍କୁ କ୍ରମାନୁସାରେ ଟୋକନ୍ ଦିଆଯାଇଥାଏ । ନିର୍ଦ୍ଦିଷ୍ଟ ଦିନରେ ସେମାନେ ଉପସ୍ଥିତ ରହି ନିଜ ଟୋକନ ଅନୁସାରେ କ୍ରମିକ ସଂଖ୍ୟାକୁ ଦେଖି ଗାତରେ ମାଟି ଦିଅନ୍ତି । ସଂକ୍ଷିପ୍ତ ଯଜ୍ଞପରେ ନିଜପାଇଁ ବୃକ୍ଷଚାରା ରୋପଣକରି ତାକୁ ତରୁପୁତ୍ର ଭାବେ ସ୍ୱୀକୃତି ଦିଅନ୍ତି । ବୃକ୍ଷଟି ସ୍ୱନିର୍ଭର ହେବା ପର୍ଯ୍ୟନ୍ତ ତା'ର ପାଳନ ଦାୟିତ୍ୱ ଦମ୍ପତ୍ତିମାନେ ଗ୍ରହଣ କରି ନେଇଥା'ନ୍ତି । ଜଳ ଦେବା, ବୃକ୍ଷକୁ ରୋଗ ପୋକଙ୍କ ଦାଉରୁ ରକ୍ଷା କରିବା ଦାୟିତ୍ୱ ବହନ କରନ୍ତି । ପ୍ରଚୁର ଜଳ ଉପଲବ୍ଧ କରିବାପାଇଁ ଏବଂ ବର୍ଷାଜଳକୁ ସଂରକ୍ଷଣ କରିବା ଉଦ୍ଦେଶ୍ୟରେ ଶ୍ରୀରାମସ୍ମୃତି ସରୋବର ବି ପାହାଡ଼ ତଳେ ତିଆରି କରାଯାଉଛି ।



ସହିଦ୍ ବାଜି ରାଉତ, ସର୍ବକନିଷ୍ଠ ସ୍ୱାଧୀନତା ସଂଗ୍ରାମୀ

# ଯୁବକମାନେ ପ୍ରବୁଦ୍ଧବର୍ଗଙ୍କ ମଧ୍ୟରେ କେମିତି ପ୍ରବେଶ କରିବେ

ଗାୟତ୍ରୀ ପରିବାରର ଯୁବକମାନେ କେତେଥର ଅଡୁଆରେ ପଡ଼ିଯାଆନ୍ତି । ସେମାନେ କେମିତି, କେଉଁ ଭୂମିକାରେ କିଭଳି ପ୍ରବୁଦ୍ଧବର୍ଗର ଲୋକମାନଙ୍କୁ ନିଜ ଆୟୋଜିତ କାର୍ଯ୍ୟକ୍ରମକୁ ଆମନ୍ତ୍ରଣ କରିବେ ? ସାଧାରଣତଃ ତାଙ୍କର ଆୟୋଜିତ ଧାର୍ମିକ ସ୍ତରର ମାନ୍ୟତା ପାଇଥାଏ । ଯେଉଁଥିରେ ଯଜ୍ଞାନୁଷ୍ଠାନ, ଗାୟତ୍ରୀ ମହାଶକ୍ତି ସଂପର୍କରେ ଉଦ୍‌ବୋଧନ ଇତ୍ୟାଦି ଦିଆଯାଇଥାଏ । କିନ୍ତୁ ପରମପୂଜ୍ୟ ଗୁରୁଦେବ ଚାହିଁଥିଲେ କି ଯୁବକମାନେ ଏଥିରେ ଯୋଗଦେବା ସହିତ ସେମାନେ ପ୍ରବୁଦ୍ଧମାନଙ୍କୁ ମଧ୍ୟ ସାଥୀରେ ନେଇ ଆସନ୍ତୁ । ପ୍ରବୁଦ୍ଧବର୍ଗ ଯେତେବେଳେ ଯୁବକମାନଙ୍କୁ ରାଷ୍ଟ୍ରନିର୍ମାଣର ପ୍ରୟୋଗରେ ଲାଗିଛନ୍ତି ଦେଖିବେ, ସେମାନଙ୍କୁ ଲାଗିବ କି ଧର୍ମ ସମ୍ପ୍ରଦାୟଦ୍ୱାରା ରାଷ୍ଟ୍ର ଉତ୍‌ଥାନର କାର୍ଯ୍ୟକ୍ରମ । ଏଥିରୁ ସେମାନେ ବୁଝିବେ, ଏଥିରେ ଆମର ମଧ୍ୟ ଭାଗନେବା ଉଚିତ ହେବ । ଦେଖୁଦେଖୁ ସେମାନଙ୍କ ମନରେ ଥିବା ସଂକୋଚ କମିଯିବ । ସବୁ ଧର୍ମ ସଂପ୍ରଦାୟର ପ୍ରବୁଦ୍ଧ ଲୋକ ଏଥିରେ ଭାଗନେବାକୁ ଆଗେଇ ଆସିବେ ।

ନିମ୍ନଲିଖିତ କୋଟୋଟି ସ୍ୱରୂପ ଏହି ପ୍ରକଳ୍ପରେ ରଖାଯାଇପାରେ, ଯଥା-

୧ . ଆମର ପ୍ରମୁଖ ପର୍ବ ଏବଂ ରାଷ୍ଟ୍ରୀୟ ଜାଗରଣ କାର୍ଯ୍ୟକ୍ରମ, ମହାପୁରୁଷଙ୍କ ଜନ୍ମ ଏବଂ ପୁଣ୍ୟତିଥିର ଶୁଭାରମ୍ଭରେ ସେମାନଙ୍କଦ୍ୱାରା ଧ୍ୱଜାରୋହଣ କରାଇ ପାରିବେ । ବୃକ୍ଷରୋପଣ ବି ତାଙ୍କଦ୍ୱାରା କରାଇ ପାରିବେ । ତାଙ୍କୁ ସଂକ୍ଷିପ୍ତ ଭାଷଣରେ ତାଙ୍କର ଅନୁଭବ କରିବାକୁ ଦିଆଯାଇପାରେ ।

୨ ଯୁବମଣ୍ଡଳୀ ଓ ଦିୟା ଇତ୍ୟାଦି ସ୍ଥାପନା ସମୟରେ ବା ବାର୍ଷିକ ଉତ୍ସବରେ ସେମାନଙ୍କୁ ନିମନ୍ତ୍ରଣ କରାଯାଇପାରେ ।

୩. ପ୍ରବାସୀ ଯୁବକମାନଙ୍କୁ ସମ୍ମାନ ଏବଂ ପ୍ରତିଭାଶାଳୀ ଶିକ୍ଷକ ଓ ସଚ୍ଚୋଟ ଅଧିକାରୀମାନଙ୍କୁ ସମ୍ମାନ ପ୍ରଦାନ ଅବସରରେ ପ୍ରବୁଦ୍ଧ ବ୍ୟକ୍ତିମାନଙ୍କୁ ନିମନ୍ତ୍ରଣ କରାଯାଇପାରେ ।

୪. ଯୁବ ଉତ୍କର୍ଷ, ଯୁବ ସଂବାଦ ଏବଂ ଯୁବ ଏକ୍ସପୋ ମହାନଗରୀମାନଙ୍କରେ ଆୟୋଜନ କରାଯାଉଥିବା ଅବସରରେ ନିମନ୍ତ୍ରଣ କରାଯାଇପାରେ ।

୫. ସପ୍ତ ଆନ୍ଦୋଳନ, ପଞ୍ଚମହା ଅଭିଯାନର ଶୁଭାରମ୍ଭ ବା ସମାପନ ଉତ୍ସବରେ ପ୍ରବୁଦ୍ଧମାନଙ୍କୁ ନିମନ୍ତ୍ରଣ କରାଯାଇପାରେ ।

୬. ଦିଯା କର୍ମଶାଳାରେ ଦିବ୍ୟତାର ଜାଗରଣ ଉଦ୍ଦେଶ୍ୟରେ ଆୟୋଜିତ ପ୍ରତିଭାଶାଳୀ ପ୍ରଗତିଶୀଳ ଯୁବକମାନଙ୍କର ଯୁବକମାନଙ୍କପାଇଁ ସାମିଲ କରାଯାଇପାରିବ ।

ପ୍ରତ୍ୟେକ ମଣିଷ ଭିତରେ ଉତ୍କୃଷ୍ଟତା ଲୁଚି ରହିଥାଏ । ତାକୁ କିପରି ଜାଗ୍ରତ କରାଯାଇପାରିବ, ସେ ସଂପର୍କରେ ପ୍ରବୁଦ୍ଧମାନଙ୍କୁ ଉଦ୍‌ବୋଧନ ଦେବାକୁ ଅନୁରୋଧ କରାଯାଇପାରେ ।

୭. ଉଚ୍ଚସ୍ତରର ସମୟଦାନ କାର୍ଯ୍ୟକ୍ରମକୁ ଉଦ୍‌ଘାଟନ ଏବଂ ତା'ର ସ୍ୱରୂପର ବିସ୍ତୃତ ବିବେଚନ ବିଭୁତିବାନମାନଙ୍କ ମାଧ୍ୟମରେ ପ୍ରବୁଦ୍ଧମାନଙ୍କ ଉପସ୍ଥିତିରେ କରାଯାଇପାରେ ।

୮ ବୃକ୍ଷରୋପଣ ମହାଯଜ୍ଞ, ଜନସ୍ୱଚ୍ଛତା ମହାଅଭିଯାନ, ତଟଶୁଦ୍ଧି, ଜଳଶୁଦ୍ଧି ଅଭିଯାନ ତଥା ଜଳସ୍ରୋତ-ନଦୀଗୁଡ଼ିକର ବୃହତ ସଫେଇ କାର୍ଯ୍ୟକ୍ରମରେ ପ୍ରବୁଦ୍ଧମାନଙ୍କୁ ସାମିଲ କରାଯାଇପାରେ ।

୯ ସ୍ୱାବଲମ୍ବନ ପ୍ରଶିକ୍ଷଣ ଆୟୋଜନ ଅବସରରେ ମଧ୍ୟ ସେମାନଙ୍କୁ ନିମନ୍ତ୍ରଣ କରାଯାଇପାରେ ।

୧୦. ନିଶାମୁକ୍ତି ପ୍ରଦର୍ଶନୀ ବା ଶିବିରଗୁଡ଼ିକର ଉଦ୍‌ଘାଟନ ସମାରୋହ ବା ରାଲିର ପତାକା ଉତ୍ତୋଳନ କରିବା ଅବସରରେ ।

୧୧. ଯୋଗ-ବ୍ୟାୟାମ କେନ୍ଦ୍ରଗୁଡ଼ିକର ସ୍ଥାପନା ଅବସରରେ ।

୧୨. ଯୁବକମାନଙ୍କ ଖେଳ ମହାକୁମ୍ଭ ଆୟୋଜନ ଅବସରରେ ।

୧୩. ଯୁବ ଉନ୍ନୟନ, ନବାଗତମାନଙ୍କୁ ସ୍ୱାଗତ ଜଣାଇବା ଉଦ୍ଦେଶ୍ୟରେ ଆୟୋଜିତ ଉତ୍ସବ ବା ପୁରାତନ ସଭ୍ୟଙ୍କୁ ବିଦାୟଦେବା ଅବସରରେ ।

୧୪. ଭାରତୀୟ ସଂସ୍କୃତି ଜ୍ଞାନପରୀକ୍ଷା ପରେ ସମ୍ମାନ ପ୍ରଦାନ ସମାରୋହ ଅବସରରେ ।

୧୫. ପାରିବାରିକ ଯୁବ ସମ୍ମେଳନୀ ଆୟୋଜନ ଅବସରରେ ।

୧୬. ଗ୍ରାମତୀର୍ଥ ସ୍ଥାପନା କାର୍ଯ୍ୟକ୍ରମ ଅବସରରେ ।

୧୭. ବର୍ଷସାରା ଯେଉଁମାନେ ଭଲକାମ କରି ଅନୁକରଣୀୟ ହୋଇ ପାରିଛନ୍ତି, ସେଭଳି ପ୍ରତିଭାଗୀଙ୍କ ସମ୍ମାନ ସମ୍ମାରୋହ ଅବସରରେ ।

୧୮ ଆଦର୍ଶ ବିବାହ କରିଥିବା ଯୁବକ-ଯୁବତୀମାନଙ୍କୁ ସମ୍ମାନ ପ୍ରଦାନ ଅବସରରେ ।

୧୯. କୋଚିଂ କ୍ଲାସ ଓ ମେଧାବୀ ଛାତ୍ରମାନଙ୍କ ପାଇଁ ପ୍ରାୟୋଜିତ କରିଥିବା ବ୍ୟକ୍ତିମାନଙ୍କୁ ତଥା ସଂପନ୍ନ ବର୍ଗର ବ୍ୟକ୍ତିମାନଙ୍କୁ ସମ୍ମାନିତ କରାଯିବା ଅବସରରେ ।

୨୦. ବିଜ୍ଞାନ ଏବଂ ଆଧ୍ୟାତ୍ମର ସମନ୍ୱୟ କରି ମେଳାର ଆୟୋଜନ । ଏଠାରେ କେତୋଟି ଝଲକମାତ୍ର ପ୍ରଦାନ କରାଯାଇଛି । ଏଭଳି ଅଗଣିତ ପ୍ରୟାସ ସମ୍ଭବ ।



*"ସ୍ୱାଧୀନତା ମୋର ଜନ୍ମଗତ ଅଧିକାର"*

*-ବାଲ ଗଙ୍ଗାଧର ତିଲକ*

# ଦିବ୍ୟତା ଜାଗରଣର କର୍ମଶାଳା

ଆଜିର ବୁଦ୍ଧିଜୀବୀ ସମୂହ ଏବଂ ଯୁବବର୍ଗ ଯେଉଁଭଳି ବାତାବରଣରେ ରହୁଛନ୍ତି, ଯେଉଁସବୁ ସମସ୍ୟାର ସମ୍ମୁଖୀନ ହେଉଛନ୍ତି, ସେ ସବୁର ସମାଧାନ ପାଇଁ ଦିବ୍ୟତା ଜାଗରଣ କର୍ମଶାଳା ଗୁଡ଼ିକରେ ରହିଛି । ଏଥିରେ ସବୁ ପ୍ରକାର ବିଷୟ ଥାଏ, ଯାହା କିଶୋର ଏବଂ ଯୁବକମାନଙ୍କଠାରୁ ଆରମ୍ଭକରି ପରିପକ୍ୱ କର୍ମକର୍ତ୍ତାମାନଙ୍କ ପାଇଁ ମଧ୍ୟ ଉପଯୋଗୀ ।

ଏହି କର୍ମଶାଳା ଗୁଡ଼ିକର ମୂଳରେ ଗୋଟିଏ ତଥ୍ୟ ରହିଛି, ଯାହାର ମୂଳରେ ଆଧ୍ୟାତ୍ମ ମୂଲ୍ୟକୁ ବିଜ୍ଞାନ ସମ୍ମତ ଭାଷାରେ ଯୁବକମାନଙ୍କୁ ବୁଝାଇବା । ପ୍ରତ୍ୟେକ ଯୁବକ ଓ ପ୍ରତ୍ୟେକ କର୍ମକର୍ତ୍ତା ଏବଂ ପ୍ରତ୍ୟେକ ଦେଶବାସୀଙ୍କ ଅନ୍ତର ହେଉଛି- ଦିବ୍ୟତାର ଘର । ସମସ୍ତେ ଖରାପ ହେଇଯାଇଛନ୍ତି, ସେମାନେ ଆଉ ସୁଧୁରିବେ ନାହିଁ, ଏଭଳି ଚର୍ଚ୍ଚା ନକାରତ୍ମକତାର ପରିଚାୟକ । ବାତାବରଣ ବିଷାକ୍ତ ହେଇଯାଇଛି ବୋଲି ସାମାଜିକ ଗଣମାଧମ ସାମାନ୍ୟ ଘଟଣାକୁ ବହୁତ ବଡ଼କରି ଦେଖାଇ ଦେଉଛି । ଧର୍ମକ୍ଷେତ୍ର ବିଡ଼ମ୍ବନାଗ୍ରସ୍ତ ହେବା କାରଣରୁ ଯୁବକମାନେ ସେଠାରୁ ଦୂରେଇ ଯାଉଛନ୍ତି । ମାର୍ଗଦର୍ଶକ କେଉଁଠି ଦେଖା ଦେଉନାହାନ୍ତି । ସ୍ୱାଧ୍ୟାୟ ପ୍ରତି କୁଦୃଷ୍ଟି ଆସୁଛି । ଟି.ଭି. ଓ ଗଣମାଧମ କଥା ଛାଡ଼ନ୍ତୁ, ସ୍ମାର୍ଟ ଫୋନରେ, ଫେସ୍‌ବୁକ୍, ୱାଟସ ଆପ୍‌ରେ ସେମାନେ ଏଭଳି ଭାବରେ କାବୁ ହେଇଯାଇଛନ୍ତି ଯେ, ସେମାନଙ୍କୁ ରଚନାତ୍ମକ କାର୍ଯ୍ୟ କ'ଣ ବୁଝାପଡୁନାହିଁ । ସ୍କୁଲରୁ ବାହାରୁ ବାହାରୁ ଅଳ୍ପବୟସର ତରୁଣଟି ଯୁବକ ଅବସ୍ଥାରେ ପଶିଯାଉଛି । କଲେଜରେ ପହଞ୍ଚି ଗଲେ, ପ୍ରଥମେ ସେ କଲେଜର ଦୁଷିତ ବାତାବରଣ ଅନୁଭବ କରୁଛି । ସମସ୍ତ ଧ୍ନ ମନ ଧ୍ୟାନ ଦେଇ ପିତାମାତାମାନେ ତାକୁ ଡାକ୍ତର ଇଂଜିନିୟର ବା ମ୍ୟାନେଜର କରିବାକୁ ଆଶା ରଖିଥା'ନ୍ତି । କିନ୍ତୁ ପିଲାଟି ମନରେ ଯଦି ଥାଏ, ଯେ ସେ ଜଣେ କଳାକାର, ଗାୟକ, ଲୋକନାୟକ, ଦେଶସେବୀ ହେବ, ତେବେ ସେଥିରେ ତାକୁ ନିୟୋଜିତ କରିବା ସମ୍ଭବ ହୁଏନାହିଁ ।

ପରାମର୍ଶଦାତା ବନ୍ଧୁଗଣ ମଧ୍ୟ ଭ୍ରମିତ ହୋଇ ଯାଆନ୍ତି । ସମ୍ବାଦ ପତ୍ରରେ ଯାହା ପ୍ରକାଶିତ ହୁଏ, ସେଥିରେ ସେମାନେ ବି ପ୍ରଭାବିତ ହୁଅନ୍ତି । ଆମ ଦେଶର ଭାଗ୍ୟବିଧାତା ନେତାମାନଙ୍କର ଆଚରଣ ଉଚ୍ଚାରଣ ଦେଖି ସେମାନେ ବି ନିରାଶ ହେଇ ଯାଆନ୍ତି । ଗଣତନ୍ତ୍ର ହେଉଛି- ଆମ ଦେଶର ମେରୁଦଣ୍ଡ । ଯେଉଁଭଳି ନିର୍ଲଜ ଭାବରେ ତା'ର ଦୁରୁପଯୋଗ କରାଯାଉଛି, ତାକୁ ଦେଖି ସେମାନେ ହତାଶହେଇ ଯାଉଛନ୍ତି । ଆମକୁ ଆଲୋକ ବର୍ତ୍ତିକା ଦେଖାଇବା ପାଇଁ ସତେ ଯେମିତି କେହିନାହିଁ । ଏଭଳି ବିଚାରକୁ ପରିବର୍ତ୍ତନ, ଏଭଳି ଧୂଆଁକୁ ହଟେଇ ଆମକୁ ଏମିତି ଏକ ଆଶ୍ଚର୍ଯ୍ୟଜନକ କାର୍ଯ୍ୟ କରିବାକୁ ପଡ଼ିବ, ଯାହାଦ୍ୱାରା ସମାଜର ଅନ୍ତଃସ୍ଥଳ ଦୋହଲିଯିବ । ପରମପୂଜ୍ୟ ଗୁରୁଦେବ ଏ' ସଂପର୍କରେ ଗହନ ମନ୍ଥନ କରି ଯେଉଁ ବିଚାର ଆମ ଆଗରେ ରଖିଛନ୍ତି, ତାହା ସର୍ବକାଳୀନ ହେଇରହିଛି । ତାହା ଆଜି ବି ପ୍ରାସଙ୍ଗିକ ହେଇରହିଛି ଏବଂ ଏହା ଆହୁରି ଆଗକୁ ଶତାଧିକ ବର୍ଷ ପର୍ଯ୍ୟନ୍ତ ରହିବ । ତେଣୁ ଆମକୁ ତାଙ୍କର ଶରଣରେ ରହିବା ଉଚିତ ।

କର୍ମଶାଳା ଗୁଡ଼ିକରେ ପୂଜ୍ୟବରଙ୍କର କ୍ରାନ୍ତିକାରୀ ଲେଖନୀର ବିଚାରଗୁଡ଼ିକୁ ସମୁଚ୍ଚୟର ଆଧାର କରି ରଖାଯାଇଛି । ଏଠାରେ ସେଭଳି କେତୋଟି ଉଦାହାରଣ ଦିଆଯାଉଛି । କିନ୍ତୁ ଆମର ଯୁବ ମାର୍ଗଦର୍ଶକ ବିଶେଷଜ୍ଞ ଓ ଅଧ୍ୟାପକମାନଙ୍କ ସାଥୀରେ ବସି ସେହି ବିଚାରକୁ ବିସ୍ତାର କରିପାରିବେ । ଆମେ ଆରମ୍ଭ କରିଦେଇଛୁ ।

୧. ମାନବ ଜୀବନର ଗରିମା ହେଉଚି- ପ୍ରଥମ ପ୍ରସଂଗ । ଅନେକ ଲୋକ ଏ' ସଂପର୍କରେ ସଂପୂର୍ଣ୍ଣ ଅଜ୍ଞ । ମାନବ ଜୀବନ କେତେ ଦୁର୍ଲଭ ଏବଂ କେତେ ମୂଲବାନ, ଅଧିକାଂଶ ଲୋକ ତା'ର ମୂଲ୍ୟାୟନ କରିପାରନ୍ତି ନାହିଁ । ସ୍ଥୂଳ ଶରୀରର ମୂଲ୍ୟ ସିନା ବହୁତ କମ୍ ହେଇପାରେ, କିନ୍ତୁ ମାନବର ଚେତନା ସେଥିରେ ସମାହିତ ହୋଇ ରହିଛି । ତେଣୁ ମାନବର ମୂଲ୍ୟକୁ କଳ୍ପନା କରାଯାଇ ନ ପାରେ । ଏ'କଥାକୁ ଯଦି ମଣିଷ ବୁଝିପାରିବ, ତେବେ ସେ କେଉଁଠୁଯାଇ କେଉଁଠି ପହଞ୍ଚିଯିବ । ଆମର କାୟା ସିନା ମଣିଷର, କିନ୍ତୁ ଆଚରଣ ନର ପଶୁ ସମାନ ହେଇଯାଉଛି । ନରପିଶାଚ ପରି ବା ନରପାମର ପରି ହେଇଯାଇଛି । ଯଦି 'ପରା' ଶକ୍ତିର ମହତ୍ୱକୁ ବୁଝିହେଇଯାଏ ବା ନିଜର ଗୌରବ ଗରିମାକୁ ଚିହ୍ନି ହୋଇଯାଏ, ତେବେ ଅସମ୍ଭବରୁ ଅତି ଅସମ୍ଭବ କାର୍ଯ୍ୟ କରିବାର ସାମର୍ଥ୍ୟ ଏହି ଶରୀରକୁ ଆସି ପାରିବ । ଏହି କାୟାରେ ତ ପୁଣି

କବୀର, ସୁରଦାସ, ସମର୍ଥ ରାମଦାସ, ଶିବାଜୀ, ବିବେକାନନ୍ଦ, ତିଳକ, ଗୋଖଲେ, ଶ୍ରୀଅରବିନ୍ଦ ଓ ଆଚାର୍ଯ୍ୟ ମହାଶୟଙ୍କ ଭଳି ମହାମାନବମାନେ ଜନ୍ମଗ୍ରହଣ କରିଥିଲେ । ନିଜର ଜୀବନକାଳ ମଧ୍ୟରେ ସେମାନେ କେତେ କାମକରି ଦେଇପାରିଲେ । ଏଥିପାଇଁ କେବଳ ଦରକାର, ନିଜକୁ ପରିଷ୍କୃତ କରି, ଚିତ୍ତକୁ ଶୁଦ୍ଧ କରିବା, ଯାହା ମହାମାନବମାନେ କରିପାରିଥିଲେ । ଅତି ସାଧାରଣ ମଣିଷଟି ଦିନେ ଅସାଧାରଣ ମଣିଷ ଭାବରେ ଉଭାହେଇ ପାରିବାର ସାମର୍ଥ୍ୟ ରଖିଥାଏ । ତାହାପୁଣି ଦୁନିଆର ଯେକୌଣସି ପରିସ୍ଥିତିରେ, ଯେକୌଣସି ବୟସରେ ଆରମ୍ଭ ହୋଇପାରେ । ଜୀବନୀଶକ୍ତିକୁ ଆହରଣ କରି ନିଜକୁ ପରିପୂର୍ଣ୍ଣ କରାଯାଇପାରେ ।

ନିଜ ସଂସାଧନକୁ ସଂଯମତା ସହିତ ଉପଯୋଗ କରି ଆମେ ନିଜର ସମୁଚିତ ବିକାଶ କରିପାରିବା । ଜୀବନଦେବତା ହେଉଛନ୍ତି-ଜଣେ ପ୍ରତ୍ୟକ୍ଷ ଦେବତା । ଯିଏ ତୁରନ୍ତ ସିଦ୍ଧ ଦେଇଥା'ନ୍ତି । ଏହି ଉକ୍ତିଟି ଏଥିରେ ସାର୍ଥକ ହେଇପାରିଛି । ଆମକୁ ଉପସନା, ସାଧନା ଓ ଆରାଧନାର ସାହାଯ୍ୟ ନେବାକୁ ହେବ । ନିଜକୁ ଅଧିକରୁ ଅଧିକ ଗରିମାପୂର୍ଣ୍ଣ ଢ଼ଙ୍ଗରେ ଭଗବାନଙ୍କୁ ସାକ୍ଷୀ ରଖି ତାଙ୍କୁ ପୁଣି ଫେରିବା ଉଚତ ହେବ । ଆମେ ଏମିତି ଜୀବନ ନେଇ ଜୀଇଁବା କି ଆମର ମୃତ୍ୟୁପରେ ଲୋକେ ଆମକୁ ମନେ ରଖିଥିବେ । ଏଥିରେ ମଣିଷ ଜୀବନର ଗରିମା ରହିପାରିବ । ଆମକୁ ଅନ୍ୟମାନେ ଅନୁକରଣ କରିବାକୁ ଇଚ୍ଛା ପ୍ରକାଶ କରିବେ । ଏହାହିଁ ପ୍ରକୃତ ଜୀବନ କଳା ।

୨ ମାନବୀ ଉତ୍କର୍ଷ ହେଉଛି, ଏହି କାର୍ଯ୍ୟକ୍ରମର ଅନ୍ୟଏକ ଅଙ୍ଗ । ଏହି କର୍ମଶାଳାର ମାର୍ମିକ ବିନ୍ଦୁ ହେଉଛି, ବ୍ୟକ୍ତିକୁ ଏହା ବିଶ୍ୱାସ ଦେବାକୁ ହେବ ଯେ, ଜନ୍ମ ଓ ମୃତ୍ୟୁ ମଧ୍ୟରେ ଯେଉଁ ଅକ୍ଷର 'C' ରହିଛି, (B ରୁ Birth, D ରୁ Death ମଝିରେ ରହିଗଲା C ରେ Choice) ଆମର ଜୀବନ ଆମ ନିଜ Choice ବା ଚୟନ ଉପରେ ନିର୍ଭ଼ର କରେ । ଆମେ ଯଦି ଜୀବନ ଗତିପଥକୁ ଠିକ୍ ଭାବରେ ଚୟନ କରିପାରିବା, ତେବେ କୌଣସି ପ୍ରକାର ଭୁଲ ହେବନାହିଁ । ପରମପୂଜ୍ୟ ଗୁରୁଦେବ ମଣିଷ ଭିତରେ ଦେବତ୍ୱର ବିକାଶର ମୂଳ ଆଧାର ବୋଲି ଧରି ନେଇଥିଲେ । ଯାହାଦ୍ୱାରା ପୃଥିବୀରେ ସ୍ୱର୍ଗର ଅବତରଣକୁ କଳ୍ପନା କରାଯାଇଛି । ଆଜି ଆମମାନଙ୍କ ଆଗରେ ଅନେକ ସମସ୍ୟା ଅନେକ ଆହ୍ୱାନ ରହିଛି । ଜନସଂଖ୍ୟା

ବୃଦ୍ଧିହେଇ ଚାଲିଛି କିନ୍ତୁ ସଂସାଧନ ସୀମିତ ହୋଇ ରହିଛି । ସମଗ୍ର ବିଶ୍ୱର ଜନଶକ୍ତି ନିଜ ଭିତରେ ଥିବା କ୍ଷମତାକୁ ଉପଯୁକ୍ତଭାବେ ବିନିଯୋଗ ନକରି ବାହାର ଚାକଚକ୍ୟ ପ୍ରତି ଅଧିକ ଆକୃଷ୍ଟ ହେଉଛନ୍ତି । ସେମାନେ ଅନ୍ତରର ଉତ୍କୃଷ୍ଟତାର ମହତ୍ୱ ବୁଝିବା ଦରକାର । ମାନବୀୟ ଉତ୍କୃଷ୍ଟତା ଦ୍ୱାରାହିଁ ସମାଜ ଉପରକୁ ଉଠିପାରେ । ମାନବୀୟ ଉତ୍କର୍ଷର ଉଦ୍ଦେଶ୍ୟ, ଦୃଷ୍ଟିକୋଣ, ସମଭାବପନ୍ନ, କର୍ମନିଷ୍ଠତା, ପ୍ରତିଶ୍ରୁତିବଦ୍ଧତା ଏବଂ ପରାକାଷ୍ଠାର ସମୁଚୟ । ଏ ଦିଗରେ ପାଦେପାଦେ ଆଗେଇ ଗଲେ ହିଁ ମଣିଷ ଉତ୍କୃଷ୍ଟତା ଯାତ୍ରା ସମାପ୍ତ କରିପାରିବ । ଆମର ଅନ୍ତଃଶକ୍ତି ଉତ୍ଥାନ ହିଁ ଆମକୁ ଉତ୍କର୍ଷ ଦିଗକୁ ଆଗେଇ ନେଇଯାଏ । ଯେମିତି ସ୍ୱାମୀ ବିବେକାନନ୍ଦ, ରାମକୃଷ୍ଣ ପରମହଂସ, ଶ୍ରୀଅରବିନ୍ଦ ଏବଂ ପଣ୍ଡିତ ଶ୍ରୀରାମ ଶର୍ମା ଆଚାର୍ଯ୍ୟଙ୍କ ଭଳି ମହାପୁରୁଷମାନେ ସେଥିରୁ ହିଁ ଜନ୍ମ ନିଅନ୍ତି । ଆମ ଯୁବକମାନଙ୍କ ମଧ୍ୟରେ ଅନନ୍ତ ସମ୍ଭାବନା ଭରି ରହିଛି । ତାଙ୍କୁ ଉଜାଗର କରିବାପାଇଁ ଆମକୁ ଚାଣକ୍ୟ ଓ ଗୁରୁଦେବଙ୍କ ଭଳି ମହାଶକ୍ତିର ଆବଶ୍ୟକତା ରହିଛି । ଆମେ କିଛି କରି ନ ପାରିଲେ ମଧ୍ୟ କେବଳ ଠିକ୍ ଭାବରେ ନିର୍ବାଚନ କରିବା । କାହାକୁ ଆମେ ଆଦର୍ଶ ଭାବେ ଗ୍ରହଣ କରିବା, ତାଙ୍କୁ ସୁନିଶ୍ଚିତ କରିବା । ସ୍ୱାଧ୍ୟାୟଶୀଳତା ଏବଂ ନିରନ୍ତର ସାଧନାଦ୍ୱାରା ଉତ୍କୃଷ୍ଟ ଯୁବକମାନଙ୍କୁ ନେଇ ଗୋଟିଏ ନୂଆପିଢ଼ି ତିଆରି କରିପାରିବା । ଏହିପରି କର୍ମଶାଳା ବିଭିନ୍ନ ସ୍ଥାନରେ ଆୟୋଜନ କରାଯାଇପାରେ । ଏହାକୁ Power Point ମାଧ୍ୟମରେ ପ୍ରଦର୍ଶନ କରାଯାଇ ପାରିବ ।

୩. ଆଜିର ମଣିଷ ଅତ୍ୟନ୍ତ ଜଟିଳ ଜୀବନ କାଟିଚାଲିଛି । ଶାନ୍ତିପାଇଁ ସେ ବ୍ୟାକୁଳ । ଚିନ୍ତାମୁକ୍ତ ଜୀବନଯାପନ ପାଇଁ ଷ୍ଟ୍ରେସ୍ ମ୍ୟାନେଜମେଣ୍ଟ କର୍ମଶାଳାର ଆୟୋଜନ ମାଧ୍ୟମରେ ଏହାର ନିରାକରଣ କରାଯାଇପାରେ । ପ୍ରତ୍ୟେକ ମଣିଷ ଭିତରେ ଅଫୁରନ୍ତ ଶକ୍ତି ରହିଛି । ଚାପ ପଡ଼ିଲେ ତାହା ନଷ୍ଟ ହେଇଯାଏ । ଯେଉଁଭଳି ଗୋଟିଏ ଲୁହାର କଣ୍ଟାକୁ ବାରମ୍ବାର ମୋଡ଼ିବା ଫଳରେ ତାହା ବିଗଡ଼ ହେଇଯାଏ । ଆଜିର ଯୁବକମାନଙ୍କୁ ଚିହ୍ନି ନ ପାରି, ଠିକ୍ ଜାଗାରେ ନିୟୋଜିତ କରାଯାଇ ନ ପାରିବାରୁ ବିଭିନ୍ନ ପ୍ରତିଦ୍ୱନ୍ଦିତାରେ ସେମାନେ ଛନ୍ଦିହେଇ ରହୁଛନ୍ତି । ସେମାନଙ୍କ ଅନ୍ତଃଶକ୍ତିକୁ କୌଣସି ରଚନାତ୍ମକ କାର୍ଯ୍ୟରେ ନିୟୋଜିତ କରାଯାଇ ପାରୁନାହିଁ । ଫଳରେ ସେମାନଙ୍କର ଉତ୍ସାହ ଓ ଶକ୍ତି ଧୀରେ ଧୀରେ ଭାଙ୍ଗିପଡୁଛି, ଏହାକୁ ଧ୍ୱଂସାତ୍ମକ

ଉତ୍ତେଜନା କୁହାଯାଏ । କିନ୍ତୁ କେହି ଯଦି ସେମାନଙ୍କର ଉତ୍ସାହ ଓ ଶକ୍ତିକୁ ସେମାନଙ୍କ ପ୍ରଗତି ପଥରେ ଲଗାଇ ଦେଉଛି, କ୍ରମଶଃ ସେମାନେ ଆଗକୁ ମାଡ଼ି ଚାଲୁଛନ୍ତି । ଏହାକୁ Eustress କୁହାଯାଏ । ଆମେ ଆଜିର ଯୁବକଙ୍କୁ ଶିଖାଇବା ଦରକାର, କିଭଳି ଅନ୍ତଃଶକ୍ତିକୁ ତାଙ୍କର ଗଠନମୂଳକ କାର୍ଯ୍ୟରେ ନିୟୋଜିତ କରି ପାରିବେ । ଚିନ୍ତାମୁକ୍ତି ପାଇଁ ଧ୍ୟାନ ରଖିବାକୁ ହେବ ଯେ, ଖାଲି ବସି ରହିଲେ, ଉପଯୁକ୍ତ କାମ ନ ମିଳିଲେ ମନରେ ଅବସାଦ ଆସେ । ଏହି ଅବସାଦ ହେଉଛି, ଏକ ପ୍ରକାର ସମସ୍ୟା । ଅର୍ଥାତ୍ ମନ ଭିତରେ କଳଙ୍କ ଲାଗିଯାଏ ବୋଲି କୁହାଯାଏ ।

ଅବସାଦ ପ୍ରବନ୍ଧନ ଧ୍ୟାନ, ସାଧନା, ଯୋଗ ବ୍ୟାୟାମ, ପ୍ରାଣାୟମ, ଉପଯୁକ୍ତ ଆହାର, ଅଙ୍କୁରିତ ଅନ୍ନ ଇତ୍ୟାଦି, ପରସ୍ପର ବିଚାର ବିମର୍ଶର କଳା, ସ୍ୱାଧ୍ୟାୟ ଏବଂ ଏହାଦ୍ୱାରା ଈଶ୍ୱରଙ୍କ ମିତ୍ର ହେବାର ରୀତି ନୀତି ଅବସାଦରୁ ମୁକ୍ତି ମିଳିବାପାଇଁ ଶିକ୍ଷାଦିଏ । ଧୀରେ ଧୀରେ ଅବସାଦ ଜନିତ ବିକୃତି ମଣିଷମନରୁ ଦୂର ହେଇଚାଲେ ।

ଆଜିର ଯୁବପିଢ଼ିକୁ ମୁଣ୍ଡବଥା, ଅଣ୍ଟାଦରଜ, ଅନିଦ୍ରା ଭଳି ଅନେକ ଗୁଡ଼ିଏ ଜୀବନୀଶକ୍ତି କ୍ଷୟ ସହିତ ଯୋଡ଼ି ହେଇଥିବା ରୋଗ ହେଉଛି । ସେହିପରି ପ୍ରୌଢ଼ ଅବସ୍ଥାରେ ହେଉଥିବା ରୋଗ ଯଥା- ପେଟରେ ଘା, ହୃଦଘାତ, ମସ୍ତିଷ୍କ ରକ୍ତପ୍ରବାହ ଭଳି ରୋଗ ମଧ୍ୟ ହେବାରେ ଲାଗିଛି । ସମୟ ଥାଉଥାଉ ଅବସାଦ ପ୍ରବନ୍ଧନ ରୀତି ନୀତିକୁ ଆପଣାଇଲେ ଅବଶ୍ୟ ସେମାନେ ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ସୁସ୍ଥ ରହିପାରିବେ । ନଚେତ୍ ଆଜିର ଯୁବକ ଚାଳିଶ ବର୍ଷ ବୟସରେ ହିଁ ବୁଢ଼ା ହେଇଯିବାର ଆଂଶଙ୍କା ରହିଛି । ଏହି କର୍ମଶାଳା ଜୀବନକୁ ନୂଆଢ଼ଙ୍ଗରେ ବଞ୍ଚାଇ ରଖିବାର କଳା ଶିଖାଏ । ଆଜିର ଯାହା ଜୀବନଶୈଳୀ, ସେଥିରୁ ତ ବିକାର ସୃଷ୍ଟିହେବା ସ୍ୱାଭାବିକ ! ତା'ର ସମାଧାନ କରି ଅଧିକରୁ ଅଧିକ ଶକ୍ତିବାନ କରିବାରେ ଏହା ସାହାଯ୍ୟ କରିଥାଏ ।

୪. ଅନ୍ୟ ଏକ କର୍ମଶାଳା ହେଉଛି- ବିଜ୍ଞାନ ଓ ଆଧ୍ୟାତ୍ମର ସମନ୍ୱୟ । ବାସ୍ତବରେ ଆମେ ଆଧ୍ୟାତ୍ମକୁ ଠିକ୍ ଢ଼ଙ୍ଗରେ ବୁଝିପାରିନାହୁଁ । ତାକୁ କର୍ମକାଣ୍ଡ ଧର୍ମ, ସଂପ୍ରଦାୟବାଦ, ପୂଜାପାଠ ଇତ୍ୟାଦିକୁ ସେଥିରେ ଯୋଡ଼ି ଦେଉଛନ୍ତି । ଆଧ୍ୟାତ୍ମର ଅର୍ଥ ହେଉଛି- ଏହା ଏଭଳି ଏକ ଦିଗର ବିଶ୍ୱାସ, ଯାହା ଆମକୁ ମୂଳସତ୍ତା ସହିତ ଯୋଡ଼ିଦିଏ । ଅଧିଃ ଆତ୍ମାନଂ, ଇତି ଆଧ୍ୟାତ୍ମ । ଆଧ୍ୟାତ୍ମ୍ୟବିଦ୍ୟା ବିଦ୍ୟାନାମ୍ (ଗୀତା)ରୁ ଏହାର ସ୍ୱରୂପ ପ୍ରକାଶ ପାଏ । ଆଜିର ଯୁବକମାନଙ୍କପାଇଁ ଆଧ୍ୟାତ୍ମ୍ୟ ଏକ ଅତ୍ୟଧିକ

ଆବଶ୍ୟକ ବିଦ୍ୟା । ଏହା ସମଗ୍ର ସଂସାରରେ ଖେଳେଇ ହେଇ ରହିଛି । ଏହୀ ମହତ ଆକାଂକ୍ଷା, କାମନା ବିଳାସ, ଭୋଗ ବୈଭବ ସହିତ ଯୋଡ଼ି ହେଇରହିଛି । ସଂସ୍କୃତିର ମୂଳମର୍ମକୁ ସେମାନେ ଏହାକୁ ବୁଝି ନ ପାରି ସେମାନଙ୍କର ବାପାଙ୍କ ଶ୍ରାଦ୍ଧରେ ପୂଜା ବା ଆହୁତି ମଧରେ ସୀମିତ ବୋଲି ମାନିନେଇଛନ୍ତି । ଆଧାତ୍ମ ବସ୍ତୁତଃ ହେଉଛି- ଜୀବନ ଜୀଇଁବାର କଳା ଯାହା ପୂର୍ଣ୍ଣତଃ ବିଜ୍ଞାନ ସମ୍ମତ ହୋଇଥାଏ ।

ଏଠାରେ ପ୍ରଶ୍ନଉଠେ, ଧର୍ମ ଓ ବିଜ୍ଞାନ ପୁଣି ଆଧାତ୍ମ୍ୟ ଏବଂ ବିଜ୍ଞାନ ତ ପରସ୍ପର ବିରୋଧୀ । ଯେଉଁଠି ବିଜ୍ଞାନ ରହିଛି, ସେଠାରେ ଆଧାତ୍ମ୍ୟ ରହିପାରିବ ନାହିଁ । ସେହିପରି ଯେଉଁଠି ଆଧାତ୍ମ୍ୟ ରହିଛି, ସେଠାରେ ତ ବିଜ୍ଞାନର ସ୍ଥାନ ହି ନାହିଁ । ବସ୍ତୁତଃ ବିଜ୍ଞାନ ପ୍ରତ୍ୟକ୍ଷବାଦ ଉପରେ ତର୍କ, ତଥ୍ୟ ଓ ପ୍ରମାଣ ଉପରେ ଆଧାରିତ । କିନ୍ତୁ ଆଧାତ୍ମ୍ୟ ଅନୁଭୂତିର, ଚେତନାର ଉଚ୍ଚସ୍ତରୀୟ ବିଜ୍ଞାନ । ଯେତେବେଳେ ଆମେ ଏହି ପରିଭାଷା ଦେଖୁ, ସେତେବେଳେ ଆମର ଦୃଷ୍ଟିକୋଣ ବଦଳିଯାଏ । ଶ୍ରୀକୃଷ୍ଣ ହେଉଛନ୍ତି-ଯୋଗେଶ୍ୱର । ସେ ଗୀତାରେ କହିଛନ୍ତି ପରା (ଆଧାତ୍ମିକ-ଚେତନା) ପ୍ରଧାନ ଓ ଅପରା (ଭୌତିକ ଜଗତ) ଦୁହିଁଙ୍କ ଦ୍ୱାରା ହିଁ ସମଗ୍ର ଜଗତ ପରିଚାଳିତ । (ଅଧାୟ-୭) ଚେତନା ବିନା ସମସ୍ତ ଜଡ଼ବସ୍ତୁ ନିର୍ଜୀବ ହୋଇ ରହିଥା'ନ୍ତି । ଯଦି ଆମେ ଚେତନା ରୂପେ ପରମେଶ୍ୱରଙ୍କୁ ମାନୁ, ତେବେ ତାଙ୍କରି କାରଣରୁ ହିଁ ସକଳ ଘଟରେ ପ୍ରାଣ ରହିଛି । ଆଧାତ୍ମ୍ୟ ମୂଲ୍ୟପ୍ରଧାନ ଜୀବନ ଜୀଇଁବା ଶିଖାଏ । ବିଜ୍ଞାନର ସାଧନାକୁ ସୁନିଯୋଜନ କରିବାର କୌଶଳ ମଧ ବତେଇଦିଏ । ଶ୍ରୀଭଗବାନ (୭/୭) ଗୀତାରେ କହିଛନ୍ତି- ମାଳାର ସୂତାରେ ଗୁନ୍ଥା ହେଇଥିବା ମାଣିକ ଭଳି ସେ ସବୁ ଜାଗାରେ ଉପସ୍ଥିତ ରହିଛନ୍ତି । "ସୂତ୍ରେ ମଣିଗଣା ଇବ" "ମତ୍ତଃ ପରତରଂ ନାନ୍ୟତ୍ କିଞ୍ଚିତ ଅସ୍ତି ଧନଞ୍ଜୟଃ", ଏହି ସୃଷ୍ଟି ବୈଜ୍ଞାନିକ ଆଧାତ୍ମ୍ୟବାଦର ସୂତ୍ର ଶ୍ଳୋକ । ସମସ୍ତଙ୍କ ଘଟ ହେଉଛି ପରମାତ୍ମାଙ୍କର ବାସସ୍ଥାନ । ଯଦି ଏହି କଥାଟି ଆମକୁ ସ୍ମରଣ ରହିପାରନ୍ତା, ତେବେ ଆମର କାମ ଠିକ୍ ଭାବରେ ହେଇପାରନ୍ତି । ଆମେ ସୁ-ଉପଯୋଗ-ସୁନିଯୋଜନ କରି ପାରିବା । ଆଜି ବିଜ୍ଞାନ ଆମକୁ ବିନାଶ ଦିଗକୁ ଟାଣି ନେଇଯାଉଛି । ତାହା ଭସ୍ମାସୁର ହେଇଯାଉଛି । ପରମାଣୁ ଶକ୍ତିରୁ ସଂଭାବିତ ବିପଦ, ପ୍ରଦୁଷଣ, ବିଶ୍ୱ ତପ୍ତିକରଣ, ଆତଙ୍କବାଦର ଆହ୍ୱାନ ଆମମାନଙ୍କୁ କହି ଦେଉଛି କି ଆମକୁ ଆଧାତ୍ମ୍ୟ ଏବଂ ବିଜ୍ଞାନକୁ ଶୀଘ୍ର ଯୋଗକରି ଗୋଟିଏ ରଚନାତ୍ମକ ମେଳି ତିଆରି କରି ହେବ ।

ପରମପୂଜ୍ୟ ଗୁରୁଦେବ ଜୀବନସାରା ବୈଜ୍ଞାନିକ ଆଧ୍ୟାତ୍ମବାଦର ସପକ୍ଷରେ କାମ କରିଛନ୍ତି ଓ ସେ ସଂପର୍କରେ ମଧ୍ୟ ଲେଖିଛନ୍ତି । ତା'ର ପରିଣାମ ହେଉଛି ଆଜି ଏତେ ସଂଖ୍ୟାରେ ଯୁବଶକ୍ତି ଧର୍ମର ଠିକ୍ ପ୍ରଗତିଶୀଳ-ପରିଷ୍କୃତ ସ୍ୱରୂପକୁ ବୁଝିପାରିଛନ୍ତି । ଅଖିଳ ବିଶ୍ୱ ଗାୟତ୍ରୀ ପରିବାରର ପ୍ରତିପାଦନ ସେମାନଙ୍କ ମନକୁ ସହଜରେ ଓହ୍ଲାଇ ଆସିଛି । ସମୟ ଆହ୍ୱାନରେ ଆମକୁ ଯଥାଶୀଘ୍ର ଧର୍ମ-ଆଧ୍ୟାତ୍ମ୍ୟକୁ ଅନ୍ଧବିଶ୍ୱାସ-କୁସଂସ୍କାର ନାମକ ରୋଗରୁ ମୁକ୍ତ କରିବାକୁ ପଡ଼ିବ । ବିଜ୍ଞାନ ଉପରେ ଆଧ୍ୟାତ୍ମ୍ୟର ଅଙ୍କୁଶ ଲଗାଇ ଦେବାକୁ ପଡ଼ିବ । ଯାହାଫଳରେ ବିନାଶକାରୀ ଦୌଡ଼ଦ୍ୱାରା ଯେମିତି ଶୀଘ୍ର ପ୍ରଳୟ ଆସି ନ ପାରୁ । ବିଗତ ପଚାଶବର୍ଷରେ ଚାରିଶହ ବର୍ଷର ପୃଷ୍ଠଭୂମିରେ ବିଜ୍ଞାନ ଅତ୍ୟନ୍ତ ଦ୍ରୁତ ଗତିରେ ପ୍ରଗତି ପଥରେ ରହିଛି । ବିଜ୍ଞାନ ଆମକୁ ସୁଖ-ସୁବିଧାର ଅନେକ ସାଧନ ଦେଇଛି । ସମଗ୍ର ବିଶ୍ୱକୁ ଗୋଟିଏ ସୂତ୍ର (network) ଦ୍ୱାରା ବାନ୍ଧି ଦେଇଛି । ଗୋଟିଏ ଛାତ ତଳକୁ ଆମ ସମସ୍ତଙ୍କୁ ନେଇ ଆସିଛି । କିନ୍ତୁ ଯଦି ଏଥିରେ ଆଧ୍ୟାତ୍ମିକ ମୂଲ୍ୟ ନ ଦେବ, ତେବେ ଏହି ପ୍ରଗତିର ଗତି ବିନାଶକାରୀ ବି ହେଇପାରେ ।

ଏହିପରି କର୍ମଶାଳାମାନ ଆଜିର ଯୁବକମାନଙ୍କ ଅନ୍ତଃଦୃଷ୍ଟି ଖୋଲିପାରିବ । ସେମାନଙ୍କର କେତେକ ଭ୍ରାନ୍ତି ଦୂର ହେଇପାରିବ । ସେମାନେ ସଂସ୍କୃତିର ମୂଳମର୍ମକୁ ଚିହ୍ନି ମାଟି ସହିତ ଯୋଡ଼ି ହେଇଯିବେ । ସେ କାରଣରୁ ଆମେ ଯୁବକ୍ରାନ୍ତି ବର୍ଷରେ ଏହି ଦିବ୍ୟ ଜାଗରଣ କର୍ମଶାଳାକୁ ପ୍ରତ୍ୟେକ ଲୋକଙ୍କ ପାଖରେ ପହଞ୍ଚାଇବା କାର୍ଯ୍ୟରେ ଲାଗିରହିଛୁ । ଏହା ସମସ୍ତଙ୍କର କାମ, ଯେମିତି ସାଧାରଣ କୃଷକ, ଜଙ୍ଗଲରେ ବନବାସୀ, ଶିକ୍ଷିତ ଯୁବକ, ସହରରେ ରହୁଥିବା ଆଧୁନିକ ବୈଜ୍ଞାନିକ-ପ୍ରବନ୍ଧନ ଏବଂ ସେମାନଙ୍କୁ ତିଆରି କରୁଥିବା ଅଧ୍ୟାପକ-ସଂଚାଳକ ମଣ୍ଡଳ । ଯଦି ଏହି କର୍ମଶାଳା ବିଭିନ୍ନ ସ୍ଥାନରେ ଯଥା- ମହାବିଦ୍ୟାଳୟ ଓ ବିଶ୍ୱ ବିଦ୍ୟାଳୟ ଗୁଡ଼ିକରେ ଚାଲେ, ତେବେ ଯୁବକ୍ରାନ୍ତି ବର୍ଷକୁ ଆଧ୍ୟାତ୍ମିକ ସଫଳତା ମିଳିଲା ବୋଲି ଧରାଯିବ ।

୫. ପଞ୍ଚମ କର୍ମଶାଳା ହେଉଛି- ଜୀବନ ଜୀଇଁବାର କଳା । ଯାହାକୁ ଆମର ଯୁବକମାନେ ବିଭିନ୍ନ ଯୁବସଂସ୍ଥାନ ଆୟୋଜନ କରିପାରିବେ । ଏହା ପଛରେ କିଛି ମହତ୍ୱପୂର୍ଣ୍ଣ ସୂତ୍ର ରହିଛି । ଜୀବନ ଜୀଇଁବା ପାଇଁ ପ୍ରଥମେ ଆମକୁ ବିଜ୍ଞାନ ଓ କଳା ମଧ୍ୟରେ ଥିବା ପ୍ରାର୍ଥନାକୁ ଜାଣିବାକୁ ହେବ । ଜୀବନ ଜୀଇଁବାର କଳା ଶବ୍ଦରେ

ଲାଳିତ୍ୟ ରହିଛି । ସୌନ୍ଦର୍ଯ୍ୟ ରହିଛି ଏବଂ ଗଭୀରତା ବି ରହିଛି । ଆମେ କେତେ ଥର ବିଜ୍ଞାନର ବିଚିତ୍ରତାରେ ଫସି ହେଇଯାଉଛୁ । କଳା ଶବ୍ଦରୁ ଏହା ବୁଝାଯାଏ ଯେ, କଳାକାରଙ୍କ ପରି ପ୍ରତ୍ୟେକ ମୁହୂର୍ତ୍ତରେ ଆମକୁ ହସିହସି ବଞ୍ଚିବା ଦରକାର । ଜୀବନର ସୀମା ରହିଛି । କେତେବେଳେ ଆମକୁ ଆରପାରିକୁ ଡକରା ଆସିଯିବ, କିଏ ଜାଣେ ? ତେଣୁ ପ୍ରତ୍ୟେକ ସମୟରେ ଏଠାରେ ଆନନ୍ଦରେ ବଞ୍ଚିବା ଦରକାର । ଜୀବନ ଜୀଇଁବାର କଳା ତ ଏକ ମହତ୍ୱପୂର୍ଣ୍ଣ ବିନ୍ଦୁ ।

(କ) ତିଆରି ହେବାର କଳା- (ଆର୍ଟ ଅଫ ବିକମିଙ୍ଗ୍) ଆମେ ସମସ୍ତେ ସ୍ୱାମୀ ବିବେକାନନ୍ଦଙ୍କ ଶ୍ରୀମୁଖରୁ ଶୁଣିଛୁ, କିନ୍ତୁ ଆମେ ତିଆରି ହେବା କେମିତି ? ପ୍ରଥମେ ତ ନିଜକୁ ନିଜେ ତିଆରି ହେଇଛୁ ପଡ଼ିବ । ତା'ପରେ ଅନ୍ୟକୁ ତିଆରି କରିବା । ଆମେ ନିଜକୁ ତିଆରି କରିଦେଲେ, ନିରନ୍ତର ବିଚାରର ଏକ ବିଧେୟାତ୍ମକ ନିର୍ଝର ଆମଠାରୁ ବାହାରିବା ଆରମ୍ଭ ହେଇଯିବ । ଆମର ପ୍ରାଥମିକତା ବଢ଼ିଯିବ । ତା'ପରେ ଲୋକେ ଆମକୁ ଦେଖି ବଦଳିବେ । ଆମକୁ ନୂଆ ଯୁବକ ଖୋଜି ଆଣିବାକୁ ହେବ । ଆମ ସହିତ ସେମାନଙ୍କୁ ଯୋଡ଼ି ରଖିବାକୁ ହେବ । ପ୍ରଥମ କଥା ହେଲା- ଦୂରଦର୍ଶିତା । ଆଜିର ପରିଣାମକୁ ନୁହେଁ ବରଂ ଆଗାମୀ ଦିନରେ ଆଜିର କର୍ମର ପରିଣାମ କ'ଣ ହେବ, ସେଥିପ୍ରତି ଧ୍ୟାନ ରଖିବାକୁ ହେବ । ସେହି ଅନୁସାରେ ଆମକୁ କର୍ମ ନିର୍ଦ୍ଧାରଣ କରିବା ଦରକାର । ଦ୍ୱିତୀୟ କଥା ହେଲା-ବିବେକର ଜାଗରଣ । ଯେତେବେଳେ ମଣିଷର ବିବେକ ଅନୁମୋଦନ କରିବ, ସେତେବେଳେ ଅନେକ ଦ୍ୱାର ଖୋଲିଯିବ । ବିବେକ ହିଁ ଆମର ଉଜ୍ଜ୍ୱଳ ଭବିଷ୍ୟତର ଦ୍ୱାର ଖୋଲିଥାଏ । ତାଦ୍ୱାରା ହିଁ ଆମେ ନିଜର ଜୀବନ ଦୃଷ୍ଟିକୁ ପ୍ରଖର କରିପାରୁ । ତୃତୀୟ କଥା ହେଲା, ଆମ ବ୍ୟତୀତ ବି ଦୁନିଆ ରହିଛି । ଆମକୁ ସେଥିପ୍ରତି ଦୃଷ୍ଟି ଦେବାକୁ ପଡିବ । ଆମେ ପରମାର୍ଥଙ୍କୁ ଚିନ୍ତା କରିବା, ସ୍ୱାର୍ଥପର ନ ହେବା ଦରକାର । ଜିବଜଗତ, ପୀଡ଼ିତ ଲୋକ, ଅଶିକ୍ଷିତ, ଜାତିକୁ ନେଇ ଲଢୁଥିବା ଦଳିତ ଲୋକଙ୍କ ପ୍ରତି ମଧ୍ୟ ଆର କିଛି ଦାୟିତ୍ୱ ରହିଛି । ଏହା ଆମର ନୂଆକରି ତିଆରି ହେବାର ଏକ ସୂତ୍ର ।

**(କ) ଚିନ୍ତା କରିବାର କଳା-** (ଆର୍ଟ ଅଫ ଥିଙ୍କିଙ୍ଗ) ଚିନ୍ତା କରିବା ମଧ୍ୟ ଗୋଟିଏ କଳା, ଏ'କଥାକୁ ଅନେକ ଲୋକ ବୁଝି ପାରନ୍ତି ନାହିଁ । ଆମେ ଅନେକ ଗୁଡ଼ିଏ କାମକୁ ବିନା ବିଚାର, ବିନା ଯୋଜନାରେ ଆରମ୍ଭ କରି ଦେଇଥାଉ ।

ଯେତେବେଳ ଆପଣଙ୍କର ସ୍ୱାଧ୍ୟାୟ ବ୍ୟାପକ ହେବ, ସେତେବେଳେ ଆପଣଙ୍କର ବିଚାରର ଅନନ୍ତ ଶୃଙ୍ଖଳାରେ ବିଚରଣ କରିବାର ସୁଯୋଗ ପାଇବ । ଏଥିପାଇଁ ଚିନ୍ତା କରିବାର କଳାକୁ ଶିକ୍ଷା କରିବା ଦରକାର । ବିଚାର-ବିମର୍ଷକରି କୌଣସି କାର୍ଯ୍ୟକୁ ଗୋଟିଏ ବିନ୍ଦୁ କରନ୍ତୁ । ସେହି ଅନୁସାରେ ଚାଲନ୍ତୁ । କେତେକ ଲୋକ କଥା କହିବା ସମୟରେ ବିନା ବିଚାରରେ ଯାହା ଇଚ୍ଛା ତାହା କହିପକାନ୍ତି । ପୁଣି ପରେ ସେମାନେ ଅନୁତାପ କରି ଭାବନ୍ତି, ମୁଁ ଏମିତି କାହିଁକି କହିଲି ? ଆମର ଗୁରୁସତ୍ତା କହିଛନ୍ତି- "ମୂର୍ଖ ଆଗେ କହି ପକାଏ, ପରେ ଚିନ୍ତା କରେ । ବିବେକବାନ ମଣିଷ ପ୍ରଥମେ ଚିନ୍ତାକରି ପୁଣି କଥାକହେ ।" ଆମକୁ ଗୋଟାଏ ବିଚାରର କୋଷାଗାର ବା ଭଣ୍ଡାର ତିଆରି କରିବାକୁ ହେବ । ଏଥିପାଇଁ ନିତ୍ୟ ନିୟମିତ ଭାବେ ପଠନ କରିବାକୁ ହେବ । ପ୍ରତ୍ୟେକ ବିଷୟକୁ ଗଭୀର ଭାବରେ ଚିନ୍ତା କରିବାକୁ ହେବ । ଗୀତା କହେ- ଯାହା ଆପଣ ଚିନ୍ତା କରିବେ, ତାହା ହିଁ ବଳେବଳେ ହେଇଯିବ । ଆପଣଙ୍କ ବ୍ୟକ୍ତିତ୍ୱ ଆପଣଙ୍କ ବିଚାରଧାରାର ପ୍ରତିବିମ୍ବ । ଆଇନ୍‌ଷ୍ଟାଇନ୍, ପ୍ଲେଟୋ, ଶ୍ରୀ ଅରବିନ୍ଦ, ସ୍ୱାମୀ ବିବେକାନନ୍ଦ, ପରମପୂଜ୍ୟ ଗୁରୁଦେବଙ୍କ ଭଳି କେହି ବି ଏହି କଳାରୁ ହିଁ ତିଆରି ହେଇପାରିବେ ।

ଖ) କାର୍ଯ୍ୟ କରିବାର କଳା- (ଆର୍ଟ ଅଫ ୱାର୍କିଙ୍ଗ) ଜଟିଳ ପରିବେଶ ଓ ପରିସ୍ଥିତିରେ ଆମକୁ କେମିତି କାମ କରିବାକୁ ହେବ, ଏଥିପାଇଁ ଆମକୁ କଳାକାରଙ୍କ ପରି କରିବା ଶିଖିବାକୁ ହେବ । ପ୍ରତ୍ୟେକ କାମର ସାରାଂଶ ପ୍ରସ୍ତୁତ କରି ନିଜର ସ୍ମରଣ ଶକ୍ତି ଉପରେ ବିଶ୍ୱାସ କରି ଆମକୁ ସାରାଦିନର କାମର ଶୃଙ୍ଖଳା ସ୍ଥିର କରିବା ଦରକାର । କାମଟି କଷ୍ଟଦାୟକ ମନେ ନ କରି ଏହାକୁ ନିଜର ସାଧନା ବୋଲି ଧରି ନେବାକୁ ହେବ । ମଝି ମଝିରେ କାମ ବଦଳାଇବା ଦରକାର । ଏକ ପ୍ରକାର କାମ କରିକରି ବିରକ୍ତ ହେବା କାରଣରୁ ତାହା ଯେମିତି ନଷ୍ଟ ହେଇ ନ ଯାଏ । ଫଳରେ ଦିନେ ଆପଣ ସଫଳତାର ଶିଖରରେ ପହଞ୍ଚି ଯାଇ ପାରିବେ ।

(ଗ) ସଂପର୍କ ସ୍ଥାପନର କଳା- (ଆର୍ଟ ଅଫ ରିଲେଟିଙ୍ଗ) ନିଜ ପରିବାର, କାର୍ଯ୍ୟାଳୟ ପରିବାର, ମିତ୍ର ସମୂହଙ୍କ ସହିତ ପ୍ରେମଭରା ସଂପର୍କ ରଖୁଥିବେ । ତାଙ୍କର ଖବର ଭଲ-ମନ୍ଦ ବୁଝୁଥିବେ । କେହି ଅସୁସ୍ଥ ଥିଲେ, ତାଙ୍କୁ ଯଥାସମ୍ଭବ ସହଯୋଗ କରୁଥିବେ । ବିଶେଷକରି ବୟୋବୃଦ୍ଧମାନଙ୍କ ପାଇଁ ଆପଣମାନଙ୍କର ପ୍ରେମ ବହୁତ ଦରକାର । ଦ୍ୱିତୀୟରେ ପିଲାମାନଙ୍କ କଥା ଆସିଥାଏ । ସେମାନେ ଦଶମାସ ବୟସରୁ

ହିଁ ଆପଣଙ୍କର ଭାବକୁ ବୁଝିପାରନ୍ତି । ଅକାରଣରେ ତାଙ୍କ ଉପରେ ରାଗିବେ ନାହିଁ । ତାଙ୍କ ପ୍ରତି ସ୍ନେହ ଶ୍ରଦ୍ଧା ରଖିଥିବେ । ବଡ଼ପିଲାମାନଙ୍କ ପ୍ରତି ଗୋଟିଏ ପଟେ ସ୍ନେହ ଓ ଅନ୍ୟପଟେ ତାଙ୍କୁ ସୁଧାରିବା ପାଇଁ ଦୃଷ୍ଟି ରଖିବା ଦରକାର ।

(ଘ) ସଂଗଠନ କଳା- (ଆର୍ଟ ଅଫ ଅର୍ଗାନାଇଜିଙ୍ଗ) ଘର ହେଉ ବା କାର୍ଯ୍ୟାଳୟ, ବ୍ୟବସାୟ କ୍ଷେତ୍ର ହେଉ ବା ଅନ୍ୟ ଯେକୌଣସି ସ୍ଥାନ ହେଉ, ଆମର କାରବାରକୁ ଠିକ୍ ଢ଼ଙ୍ଗରେ କରାଯାଇ ପାରେ । ବ୍ୟବସ୍ଥିତ ପଦ୍ଧତି ସଫଳତାର ଋବିକାଠି । ଆପଣ ବି କାମ କରିବା ଶିଖନ୍ତୁ, ଦେବା ଶିଖନ୍ତୁ, ନେବା ଶିଖନ୍ତୁ, କିନ୍ତୁ କାମକୁ ବୋଝ ମନେ ନ କରନ୍ତୁ ବରଂ ଏହାକୁ ରସପୂର୍ଣ୍ଣ କରିବାକୁ ଚେଷ୍ଟା କରନ୍ତୁ ।

(ଙ) ପର୍ଯ୍ୟାବରଣର ଅନୁକୂଳ ଜୀବନ ପଦ୍ଧତି- (ଆର୍ଟ ଅଫ ଇକୋଲାଜୀ) ଆମ ନିଜ ଅଞ୍ଚଳ ଓ ପରିବେଶକୁ ସବୁଜ ସୁନ୍ଦର କରିବା ସହିତ ଆଖପାଖ ଅଞ୍ଚଳର ବାତାବରଣ ପ୍ରତି ମଧ୍ୟ ଦୃଷ୍ଟିଦେବା ଦରକାର । ସମଗ୍ର ବିଜ୍ଞାନର ବିଭାଗ ହିଁ ଏଇଠୁ ମିଳିଥାଏ । ଯଦି ଆମେ ଜିବଜଗତ, ବୃକ୍ଷଲତା, ପର୍ଯ୍ୟାବରଣ, ଋତୁଚର୍ଯ୍ୟା ଇତ୍ୟାଦି ସହିତ ନିଜକୁ ସାମିଲ କରିଦେଇ ପାରିବା, ତେବେ ଆମର ଜୀବନ ସୁଖମୟ ହୋଇଯିବ । ଡ଼ିପ୍ ଇକୋଲଜୀକୁ ଆମେ ଅନ୍ତର ପର୍ଯ୍ୟନ୍ତ ଶିଖିଗଲେ, ତେବେ ୧୨୭ କୋଟି ଭାରତବାସୀ ବଦଳିଯାଇ ପାରିବେ ।

(ଚ) ଜୀବନ ପାଇଁ ସ୍ୱାସ୍ଥ୍ୟ- ଆମେ ସ୍ୱାଦପାଇଁ ଖାଉ ନା ସ୍ୱାସ୍ଥ୍ୟ ପାଇଁ ? ଆଜି ଅଧିକାଂଶ ଜୀବନଶୈଳୀ ରୋଗ ସୃଷ୍ଟିର ମୂଳ କାରଣ ହେଉଛି । ଋକ୍‌ବେଦ କହେ- 'ଅନ୍ନୋ ବୈ ମନଃ' । ଯାହା ଆମେ ଆଇବା, ସେଇଭଳି ମଣିଷ ହେବା । ତେବେ ଆମେ ଖାଉଛୁ କ'ଣ ? ଏହାଉପରେ ଧ୍ୟାନ ରଖିବାକୁ ହେବ । ମଣିଷ ତ ସ୍ୱାଭାବିକ ଭାବରେ ଶାକାହାରୀ । ତେଣୁ ଆମକୁ ଶାକାହାର ଉପରେ ନିର୍ଭର କରିବା ଉଚିତ । ଫାଷ୍ଟଫୁଡ୍ ଏବେ ସବୁ ଗଣ୍ଡଗୋଳିଆ କରି ଦେଇଛି । କେଉଁଠି ମାଂସ ତ କେଉଁଠି ଅଣ୍ଡା ତା'ର ଠିକଣା ନାହିଁ । ଲୋକ କେବେ ବାହାରକୁ ଯାଇ ଖାଉଛନ୍ତି ତ ପୁଣି ପିଲାମାନଙ୍କୁ ଖୋଇ କୁସଂସ୍କାରୀ କରି ଦେଇଛନ୍ତି । ଅଙ୍କୁରିତ ଅନ୍ନ, ଫଳ, ସଲାଦ, ସବୁଜ ରୋଟି, ଶାଗକୁ ନିୟମିତ ଖାଆନ୍ତୁ । ତାଜା ଫଳରସ ପିଅନ୍ତୁ । ଆପଣ କେବେ ବି ବେମାର ପଡ଼ିବେ ନାହିଁ । ଏହାଦ୍ୱାରା କୌଣସି ରୋଗ ହେବାର ଦୁର୍ଯୋଗ ନାହିଁ ।

(ଛ) ନିୟମିତ ବ୍ୟାୟାମ- ଆପଣ ନିୟମିତ ପାଦରେ ଚାଲନ୍ତୁ, ଦୌଡ଼ନ୍ତୁ । ସାଇକେଲ ଚଳାନ୍ତୁ, ନିୟମିତ ବ୍ୟାୟାମ କରନ୍ତୁ, କିନ୍ତୁ ଘରେ ବିଛଣାରେ ପଡ଼ିରହି ଘରକୁ ରୋଗର ଘର କରନ୍ତୁ ନାହିଁ । ପ୍ରତିଦିନ ନିୟମିତ ବ୍ୟାୟାମ ଶରୀରକୁ ସୁସ୍ଥ ରଖେ । ମାଂସପେଶୀକୁ ମଜଭୁତ କରେ । ଶରୀରରେ ହରମୋନ ଏବଂ ଏନଜାଇମ୍ ପରିଚାଳନାରେ ସହାୟକ ହୁଏ । ଖାଇ ପିଇ ବିଛଣାରେ ପଡ଼ି ରହିଲେ, ମଣିଷ ମୋଟା ହୁଏ । ପ୍ରଜ୍ଞାଯୋଗ ସମ୍ବନ୍ଧରେ ଯୁଗଋଷି କହିଛନ୍ତି, ଏହା ଏଭଳି ଏକ ସହଜ କାମ, ଯାହାକୁ ଯେ କେହି କରିପାରିବେ । ବ୍ୟାୟାମ ମଧ୍ୟରେ ସୂର୍ଯ୍ୟ ନମସ୍କାର ଏହାର ପ୍ରକୃଷ୍ଟ ଉଦାହରଣ । ଗାୟତ୍ରୀ ମନ୍ତ୍ରର ଅକ୍ଷରଗୁଡ଼ିକ ସହିତ ଏହା କରାଯାଇଥାଏ । ଏହାର ସିଡ଼ି ଶାନ୍ତିକୁଞ୍ଜରୁ ମଗାଇ ନିଆଯାଇ ପାରିବ ।

(ଜ) ସେବାଧର୍ମର ମହତ୍ୱ- ନିସ୍ୱାର୍ଥ ସେବାର ମହତ୍ୱକୁ ବୁଝି ସମସ୍ତଙ୍କ ପାଇଁ ଆତ୍ମୀୟତା ପୂର୍ଣ୍ଣ ସେବାଭାବ ବିକଶିତ କରିବା ଶିଖନ୍ତୁ । ନିଜକୁ ଆତ୍ମସନ୍ତୋଷ ମିଳିବ, ସଦ୍‌ଭାବନା ଜାଗ୍ରତ ହେବ । ଯେଉଁମାନେ ବୃଦ୍ଧ ଏବଂ ଏକୁଟିଆ ସେମାନଙ୍କୁ ସପ୍ତାହରେ ଦୁଇ ବା ତିନିଥର ସେବା କରାଯାଉ । ବାରମ୍ବାର ତାଙ୍କୁ ସେବାକରି ସନ୍ତୋଷ ଦେଇପାରିବେ । ଡାକ୍ତରଖାନାକୁ ଯାଇ ଦେଖନ୍ତୁ, କେତେଲୋକ ଆପଣଙ୍କ ସେବାପାଇଁ ଅପେକ୍ଷା କରିଛନ୍ତି । ଯଦି କିଛି କରିହୁଏ ତ ତେବେ ତାଙ୍କପାଇଁ କିଛି କରନ୍ତୁ । ଅପରିଷ୍କୃତ ବସ୍ତି, ଅନାଥାଶ୍ରମ ଏବଂ ମନ୍ଦିରରେ ମଧ୍ୟ ଆପଣଙ୍କ ସେବା ଦରକାର । ମନ୍ଦିରକୁ ସଫା ରଖି, ଅନାଥ ପିଲାଙ୍କୁ ଆଶା ଭରସା ଦିଅନ୍ତୁ । ଅପରଷ୍କୃତ ବସ୍ତିରେ ସ୍ୱାବଲମ୍ବନ, ସ୍ୱଚ୍ଛତାର କ୍ରମ ପ୍ରସ୍ତୁତ କରାଯାଉ ।

(ଝ) **ସୁସ୍ଥ ବୟସ୍କ**- ଆପଣ ସ୍ୱୟଂ ନିଜର ବୃଦ୍ଧ ବୟସକୁ ତିଆରି କରନ୍ତୁ । ଯାହା ଅନୁଭବ ହେଲା, ତାଙ୍କୁ ନେଇ ବୟସ୍କମାନଙ୍କୁ ଦିଅନ୍ତୁ, ସମାଜକୁ ଆପଣ କ'ଣ ଦେଇପାରିବେ, ସାଂସାରିକ ବନ୍ଧନରୁ କେମିତି ମୁକ୍ତି ପାଇବେ, ସ୍ୱାସ୍ଥ୍ୟ କିପରି ଭଲ ରହିବ ।

**୬. ଛଅଟି କର୍ମଶାଳା -**

ହୋଲିଷ୍ଟିକ୍ ହେଲଥ ମେନେଜମେଣ୍ଟର ଅର୍ଥ ସମଗ୍ର ସ୍ୱାସ୍ଥ୍ୟ ପ୍ରବନ୍ଧନ । ହୋଲିଷ୍ଟିକ୍ ବା ହୋଲିଜମ୍‌ର ଅର୍ଥ ହେଉଛି, ଏକ ପ୍ରକ୍ରିୟା ଯାହାଦ୍ୱାରା ଆମେ ବିଭିନ୍ନ ଧାରାର ସମନ୍ୱୟ କରୁଛେ । ସ୍ୱାସ୍ଥ୍ୟ ପ୍ରବନ୍ଧନରେ ହୋଲିଜମ୍‌ର ଅର୍ଥ ହେଉଛି- ସର୍ବାଙ୍ଗ

ପୂର୍ଣ୍ଣ ବ୍ୟବସ୍ଥା । ଯେଉଁଥିରେ କି ଆମର ସ୍ୱାସ୍ଥ୍ୟ ଠିକ୍ ରହେ । ସ୍ୱାସ୍ଥ୍ୟଭଳି ବିଷୟରେ ବି ଆଜି ଆଧ୍ୟାତ୍ମ ପ୍ରଧାନ ଚିକିତ୍ସାର ସମାବେଶ ଅନିବାର୍ଯ୍ୟ ହେଇଯାଇଛି । ଏବଂ ଚିକିତ୍ସକମାନଙ୍କ ପାଇଁ ରୋଗୀ କେବଳ ଗୋଟାଏ ଶରୀର ନୁହେଁ । ଶରୀର, ମନ, ଆତ୍ମା ତଥା ସେଥିରେ ଯୋଡ଼ି ହେଇଥିବା ପର୍ଯ୍ୟାବରଣର ପ୍ରତ୍ୟେକ ଅଙ୍ଗ ଏବଂ ପରିବାରର ସଦସ୍ୟମାନେ ଆସନ୍ତି । ଏବେ ଆମର ସାମନାରେ କିଛି ସଂକଟ ରହିଛି । ଯାହା ଏକବିଂଶ ଶତାବ୍ଦୀରେ ଭାରତବର୍ଷରେ ପଦାର୍ପଣ କରି ସାରିଛି । ଯଥା-

୧. ମହାମାରୀ, ୨. କୁପୋଷଣ (ପୁଷ୍ଟିହୀନତା)

୩. ଶକ୍ତିର ସଂକଟ, ୪. ପର୍ଯ୍ୟାବରଣର ବିକାଶ

୫. ମାଦକ ପଦାର୍ଥ ଏବଂ ମାଦକ ଔଷଧ କିଣାବିକା ।

ରୋଗୀପାଇଁ ଚିକିତ୍ସକ ତ ଭଗବାନଙ୍କ ସମାନ ହୋଇଥା'ନ୍ତି । ତାଙ୍କଠାରୁ ବହୁତ କିଛି ଆଶା କରାଯାଏ, ସମସ୍ତେ ତାଙ୍କ ଉପରେ ମଧ ଭରସା କରନ୍ତି । କିନ୍ତୁ ଡ଼ାକ୍ତରମାନଙ୍କର ମଧ ନିଜର କିଛି ସମସ୍ୟା ଥାଏ । ସେମାନଙ୍କ ପାଖରେ ସମୟର ଅଭାବ ଥାଏ । ଯେଉଁଥିରେ ସେ ନିଜର ପୂରା ମନକୁ ଲଗାଇ ରୋଗୀକୁ ଠିକ୍ ଭାବରେ ଦେଖି ପାରନ୍ତି ନାହିଁ । ସ୍ୱାସ୍ଥ୍ୟ ପ୍ରବନ୍ଧନରେ ଆହୁରି କେତେକ ମହତ୍ୱପୂର୍ଣ୍ଣ ଘଟଣା ଯଥା-

(କ) ନୈତିକ, ସାଂସ୍କୃତିକ, ଆଧ୍ୟାତ୍ମିକ, ମୂଲ୍ୟ-ପାରିବାରିକ ସଂସ୍କାର ।

(ଖ) ରୋଗୀ ପାଖରେ ବା ଚିକିତ୍ସା ସଂସ୍ଥାନରେ ଅର୍ଥର ଅଭାବ ।

(ଗ) ରାଜନୈତିକ ହସ୍ତକ୍ଷେପ ବା କୌଣସି ପ୍ରକାରେ ଚିକିତ୍ସା ପ୍ରକ୍ରିୟାରେ ବାଧା ସୃଷ୍ଟି ।

ଭାରତୀୟ ସଂସ୍କୃତି ଅନୁସାରେ ସମଗ୍ର ସ୍ୱାସ୍ଥ୍ୟ ପ୍ରବନ୍ଧନର ଅର୍ଥ ହେଉଛି- ଯୋଗ ମାଧ୍ୟମରେ ସମସ୍ତ ଚିକିତ୍ସା ପ୍ରଣାଳୀର ସମନ୍ୱୟ କରିବା । ରୋଗୀକୁ ଶ୍ରେଷ୍ଠତମ ସେବା ପ୍ରଦାନ କରିବା । ଆଜି ଚିକିତ୍ସା ବିଜ୍ଞାନରେ ନୈତିକତାକୁ ବହୁତ ମହତ୍ୱ ଦିଆଯାଉଛି । ଦାୟିତ୍ୱହୀନ ଚିକିତ୍ସକମାନଙ୍କ ଉପରେ ଖୁବ୍‌ଶୀଘ୍ର ଆଇନଗତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଉଛି । ଉତ୍ୟକ୍ତ ଲୋକେ ଡାକ୍ତରମାନଙ୍କୁ ମାରଧର ବି କରୁଛନ୍ତି । ଏଭଳି ପରିସ୍ଥିତିକୁ ଦୃଷ୍ଟିରେ ରଖି ଚିନ୍ତା କରାଯାଏ କି ମାନବୀୟ ସଂବେଦନା

କମିଯାଉଛି । ଏଭଳି କ୍ଷେତ୍ରରେ ଡାକ୍ତରମାନେ ସେମାନଙ୍କର ସଙ୍ଗଠନ ମାଧ୍ୟମରେ ଏହାର ପ୍ରତିବାଦ କରୁଛନ୍ତି ଏବଂ ଡାକ୍ତରମାନଙ୍କର ଭୁଲ ତ୍ରୁଟିକୁ ଲୁଚାଇ ଦେବାକୁ ମଧ୍ୟ ଚେଷ୍ଟା କରୁଛନ୍ତି । ନୈତିକତା ସହିତ ଯୋଡ଼ି ହେଇଥିବା କୋଟୋଟି ବିନ୍ଦୁ ହେଉଛି, ଚିକିତ୍ସକଙ୍କ ସହିତ ସମ୍ବନ୍ଧିତ । ତାହାହେଲା ଲିଙ୍ଗ ନିରୂପଣ କରିବା ପାଇଁ ଚାପ ସୃଷ୍ଟି କରିବା । ଗର୍ଭପାତ, ଇଚ୍ଛାମୃତ୍ୟୁ ପାଇଁ ଡାକ୍ତରଙ୍କ ସହଯୋଗ ପାଇଁ ଚାପ, ଅତିବୃଦ୍ଧ ଏବଂ ଅସମର୍ଥ ରୋଗୀ, ଆଜିର ମୂଲ୍ୟବୃଦ୍ଧି ଫଳରେ ଦାମୀ ଔଷଧ ଓ HIV ତଥା ଏଡ୍ସର ସଂକଟ ଏବଂ ଏଥିରୁ ଉତ୍ପନ୍ନ ଉତ୍ତେଜନା ପ୍ରଭୃତି ମହାବ୍ୟାଧି । ବିକଳ୍ପ ଚିକିତ୍ସା ପଦ୍ଧତିରେ ଅନ୍ୟ ଏକ ନୂଆ କ୍ରାନ୍ତି ଆସିଛି । ବ୍ରହ୍ମବର୍ଚ୍ଚସ ଶୋଧ ସଂସ୍ଥାନ ଏବଂ ଦେବ ସଂସ୍କୃତି ବିଶ୍ୱ ବିଦ୍ୟାଳୟଦ୍ୱାରା ଯଜ୍ଞ ଚିକିତ୍ସା ସହିତ ସମଗ୍ର ଚିକିତ୍ସା ପ୍ରଣାଳୀର ଆରମ୍ଭ ଫଳରେ ଏକ ନୂଆ ଆଶା ସଞ୍ଚାର ହେଇଛି । ବିକଳ୍ପ ଚିକିତ୍ସାରେ ଦୁଇପ୍ରକାର ପଦ୍ଧତି ରହିଛି, ଯଥା-

ଜୈବିକ ଚିକିତ୍ସା- ଏହା ଜଡ଼ିବୁଡ଼ି, ବନୌଷଧି ଉପରେ ଆଧାରିତ । ଏରୋମା ଚିକିତ୍ସା ସୁଗନ୍ଧିତ ତୈଳଦ୍ୱାରା କରାଯାଏ । ପଞ୍ଚକର୍ମ ଚିକିତ୍ସା, ଆହାର ଚିକିତ୍ସା, ଆର୍ଥ୍ରି ମାଲିକ୍ୟୁଲର ଚିକିତ୍ସା ଯାହାକୁ ଗଣ୍ଠି, ସନ୍ଧି, ମାଂସପେଶୀର ଚିକିତ୍ସା କୁହାଯାଏ । ସେହିଭଳି ଯୋଗଦ୍ୱାରା ଅନ୍ୟଟି ହେଲା-ଯୋଗ ଚିକିତ୍ସା ।

ଦେହ-ମନର ସମନ୍ୱିତ ଚିକିତ୍ସା- ସମ୍ମୋହନଦ୍ୱାରା ହିପ୍ନୋଥେରାପୀ, ପ୍ରାଣିକ୍ ହିଲିଂ, ଧ୍ୟାନ ଚିକିତ୍ସା କରାଯାଏ ।

ଏହି ନୂତନ ଚିକିତ୍ସା କୌଶଳ ଏବେ ଅଧିକ ଲୋକପ୍ରିୟ ହେବାରେ ଲାଗିଛି । ୬୦ ରୁ ୮୦ ପ୍ରତିଶତ ଲୋକ ଏବେ ଏହି ଚିକିତ୍ସା ପ୍ରଣାଳୀ ଉପରେ ନିର୍ଭର କରୁଛନ୍ତି । ବିଶେଷ ରୂପେ ରୋଗୀକୁ ସୁସ୍ଥ ରଖିବା ସହିତ ଭଲ ସ୍ୱାସ୍ଥ୍ୟ ତିଆରି କରିବା ଦିଗରେ ଏବେ ଜୀବନଶୈଳୀ ବିଶେଷଜ୍ଞମାନେ ଗୁରୁତ୍ୱ ଦେଉଛନ୍ତି । କ୍ରିଷ୍ଟେଲ ଥେରାପି, ରେକୀ ଏବଂ ସ୍ପର୍ଶ ଚିକିତ୍ସା ବି ଏବେ ବେଶ ଲୋକପ୍ରିୟ ଏବଂ ସଫଳତା ଲାଭ କରୁଛି । ଅଷ୍ଟିଯୋପେଥି, ମାଲିସ, ସମଗ୍ର ଆୟୁର୍ବେଦ, ଚାଇନିଜ ମେଡ଼ିସିନ୍, ହୋମିପୋଥି ଏବଂ ପ୍ରାକୃତିକ ଚିକିତ୍ସା ବି ଏହା ସହିତ ଯୋଡ଼ିହେଇ ଚାଲିଛି । କେମୋ (CAM) ଏବେ ଏକ ସ୍ଥାପିତ ଚିକିତ୍ସା ପଦ୍ଧତି । ଏହା କର୍ମଶାଳା ସହିତ ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ଜନଜାଗୃତି ଅଣାଯାଇ ପାରିବ । ଦେବ ସଂସ୍କୃତି ବିଶ୍ୱ ବିଦ୍ୟାଳୟର ପଲିକ୍ଲିନିକ୍ ଏହି ଦିଗରେ ଏକ କ୍ରାନ୍ତିକାରୀ ପ୍ରୟାସ କରୁଛି । -୦-

# ମହାକ୍ରାନ୍ତି ଆରମ୍ଭ ହେଉଛି- ଆଧ୍ୟାତ୍ମିକ ସାମ୍ୟବାଦ ଆସିବ

କ୍ରାନ୍ତି ଏଭଳି ଆସେ-

ନୂତନ ବର୍ଷର ଆରମ୍ଭ ହେଇସାରିଛି । ସବୁକିଛି ନୂଆ-ନୂଆ । ଯେତେବେଳେ କିଛି ନୂତନ ପରିବର୍ତ୍ତନ ଆସେ, ତା'ର ପୃଷ୍ଠଭୂମି ମଧ୍ୟ ପ୍ରସ୍ତୁତ ହେଇଯାଏ । ସାଧାରଣ ଜନତା ତାକୁ ବୁଝିପାରନ୍ତି ନାହିଁ । ଯେତେବେଳେ ଏକ ବିରାଟ ପରିବର୍ତ୍ତନ ଆସେ, ସେତେବେଳେ ସେମାନେ ବୁଝନ୍ତି ଯେ, ଏମିତି ପରିବର୍ତ୍ତନ କେମିତି ଘଟିଥାଏ ? ପରମପୂଜ୍ୟ ଗୁରୁଦେବ ଲେଖିଛନ୍ତି କି କ୍ରାନ୍ତି ରେଲଗାଡ଼ିର ଡବାଭଳି ଆସେ । ଆପଣ ପ୍ଲାଟଫର୍ମରେ ଛିଡା ହେଇଥିବେ, ଅଚାନକ ଘୋଷଣା ହେଇଯାଏ । ପ୍ରଥମେ ଶବ୍ଦ ଆସେ, ତା'ପରେ ଇଞ୍ଜିନ୍ ଆସେ । ତାକୁ ଲାଗି ଗୋଟିଏ ପରେ ଗୋଟିଏ ଡବା ଆସି ପ୍ଲାଟଫର୍ମରେ ଲାଗିଯାଏ । ଯଦି ଆପଣ ଠିକ୍ ଜାଗାରେ ଛିଡ଼ା ହେଇଥା'ନ୍ତି, ତେବେ ଆପଣଙ୍କ ଡବା ଆପଣଙ୍କ ପାଖରେ ଆସି ଅଟକିଯାଏ । କେତେ ଦୃତଗତିରେ ଏହି ବିଦ୍ୟୁତ ଚାଳିତ ରେଲଗାଡ଼ି ଆସିଥାଏ । ପୁଣି ଆପଣ ବସିବାପରେ ପରେ ସେ ଚାଲିଯାଏ । ପୂଜ୍ୟବରଙ୍କ ଅନୁସାରେ କ୍ରାନ୍ତି ଏଇମିତି ଆସେ । ଗୋଟିଏ ପରେ ଗୋଟିଏ ଆସି ଚାଲିଯାଏ । କିନ୍ତୁ ଯୁଗ ବଦଳିଯାଏ । ସମଗ୍ର ସ୍ଥିତି ଓ ବାତାବରଣ ତା' ସହିତ ଅଚାନକ ବଦଳିଯାଏ । ୧୮୫୭ ମସିହାରେ କେହି ବି ଭାବି ନ ଥିଲେ କି ଭାରତକୁ ସ୍ୱାଧୀନତା ମିଳିଯିବ । କିନ୍ତୁ ସ୍ଥିତି ବଦଳିଗଲା । ରାଣୀ ଲକ୍ଷ୍ମୀବାଈ, ତାନ୍ତିଆ ଟୋପେ, ମଂଗଳପାଣ୍ଡେଙ୍କ ଭଳି ସଂଗ୍ରାମୀମାନେ ନିଜକୁ ଆହୁତି ଦେଲେ । ଫଳରେ ସ୍ୱାଧୀନତାର ପୂର୍ବବେଳାର ଆଶା ସଂଚାର ହେଲା । ତା'ପରେ ପରେ ସ୍ୱାମୀ ବିବେକାନନ୍ଦ, ଶ୍ରୀଅରବିନ୍ଦ, ମହାତ୍ମାଗାନ୍ଧୀଙ୍କ ଭଳି ମହାପୁରୁଷମାନେ ପନ୍ଦରବର୍ଷ ମଧ୍ୟରେ ଜନ୍ମ ନେଲେ । ସେମାନେ ନିଜ ନିଜର ଭୂମିକାକୁ ଠିକ୍ ଭାବରେ ନିର୍ବାହ କରିଚାଲିଲେ ।

ଠାକୁର ଶ୍ରୀରାମକୃଷ୍ଣ ପରମହଂସ ଦେବ ଏବଂ ତାଙ୍କର ଦକ୍ଷିଣେଶ୍ୱର, ତାଙ୍କର ଶିଷ୍ୟ, ଅନୁଚର ବଙ୍କିମଚନ୍ଦ୍ର ଚଟାର୍ଜୀ, ରାହାସବିହାରୀ ବୋଷ ଏବଂ ଅନ୍ୟ କେତେଜଣ ଅଜ୍ଞାତ କ୍ରାନ୍ତିକାରୀ ନିଜର ଦୈବୀ ପ୍ରୟୋଜନ ପୂର୍ଣ୍ଣ କରିବାରେ ଲାଗିଗଲେ । ଭଗତ ସିଂହ, ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ଆସିଲେ । ତାଙ୍କର ସାଂଗସାଥୀ ସହଯୋଗୀ ମଧ୍ୟ ଆସିଲେ । ଗାନ୍ଧୀଜୀ ଦକ୍ଷିଣ ଆଫ୍ରିକାରୁ ଆସି ଗୋଖଲେ, ତିଳକଙ୍କ ସଙ୍ଗେ ମିଶି ନିଜର ଭୂମିକା ନିଭାଇଲେ । ଏହା ମହାପରିବର୍ତ୍ତନର ପୂର୍ବବେଳା ଥିଲା । ଯାହାର ନାମ ଥିଲା- ଭାରତ ରାଷ୍ଟ୍ରକୁ ସ୍ୱାଧୀନତା । ଶ୍ରୀଅରବିନ୍ଦ, ରମଣ ମହର୍ଷି ଏବଂ ଆଚାର୍ଯ୍ୟ ଶ୍ରୀରାମ ଶର୍ମା ମହାଭାଗ ଏପଟେ ଆଧ୍ୟାତ୍ମିକ ସ୍ତରରେ ନିଜର ଭୂମିକାକୁ ନିର୍ବାହ କଲେ ।

ପଟେଲ ଓ ଶ୍ରୀ ଅରବିନ୍ଦଙ୍କ ମହାପ୍ରୟାଣ ପରେ ୧୯୫୦ ମସିହାରେ ଗୋଟାଏ ଯୁଗର ପଟ୍ଟପରିବର୍ତ୍ତନ ହେଲା । କିନ୍ତୁ ପରମପୂଜ୍ୟ ଗୁରୁଦେବ ପଣ୍ଡିତ ଶ୍ରୀରାମ ଶର୍ମା ଆଚାର୍ଯ୍ୟ ବ୍ୟାପକ ବିଚାରେ କ୍ରାନ୍ତିର କାର୍ଯ୍ୟ ନିଜ ହାତକୁ ନେଲେ । ଏହାର ପରିଣାମ ସ୍ୱରୂପ ଏକ ବିରାଟ ଗାୟତ୍ରୀ ପରିବାର କ୍ରାନ୍ତିକାରୀ ଦୃଷ୍ଟି ନେଇ ଠିଆ ହେଇଗଲା ।

ପରମପୂଜ୍ୟ ଗୁରୁଦେବ ଲେଖିଛନ୍ତି- (ମାର୍ଚ୍ଚ ୧୯୬୭ ପୃଷ୍ଠା-୩୪) ଆଗାମୀ ଦିନରେ ପୁଞ୍ଜି ନାମକ ବସ୍ତୁ କୌଣସି ବ୍ୟକ୍ତିଙ୍କ ପାଖରେ ରହିବ ନାହିଁ । ଧନ ଏବଂ ସଂପତ୍ତିର ମାଲିକ ସରକାର ଏବଂ ସମାଜର ହେଇଯିବା ସୁନିଶ୍ଚିତ । ପ୍ରତ୍ୟେକ ବ୍ୟକ୍ତି ନିଜର ଖାଦ୍ୟପାଇଁ ପରିଶ୍ରମ କରିବ । କେହି ଚାହେଁ ତ ଏହାକୁ ଏକ ସୁନିଶ୍ଚିତ ଭବିଷ୍ୟବାଣୀ ବୋଲି ଧରିନେଇ ଟିପି ରଖିନେଇ ପାରନ୍ତି । ଆଗାମୀ ଦିନ ଏହି ସତ୍ୟକୁ ଅକ୍ଷରେ ଅକ୍ଷରେ ସିଦ୍ଧ କରିବ । ଏଥିପାଇଁ ବର୍ତ୍ତମାନ ଯୁଗର ବିଚାରଶୀଳ ଲୋକଙ୍କ ପାଖରେ ଆମର ନିବେଦନ-ପୁଞ୍ଜି ଜମାକରି, ପୁଅ-ନାତିଙ୍କ ପାଇଁ ସଂପତ୍ତି ବଢ଼ାଇବାର ଗୋଲୋକ ଧନ୍ଦାରେ ଛନ୍ଦି ହେଇ ନ ଯାଆନ୍ତୁ । ରାଜା ଓ ଜମିଦାରଙ୍କ ସମ୍ପତ୍ତି କିଭଳି ଏକାରାତିକେ ଚାଲିଗଲା, ସେକଥାକୁ ଆପଣମାନେ ଦେଖି ସାରିଛନ୍ତି । ସେମାନଙ୍କର ବ୍ୟକ୍ତିଗତ ପୁଞ୍ଜି ଏବେ ସାର୍ବଜନିକ ଘୋଷିତ ହେଇଗଲା । ଏବେ ଅନ୍ୟ ପୁଞ୍ଜିପତିଙ୍କର ଧନ ସମ୍ପତ୍ତି ମଧ୍ୟ ଦିନେ ସବୁ ସେହିପରି ସାର୍ବଜନିକ ହେଇଯିବ । ଆପଣମାନେ ତାହାକୁ ଆଖିରେ ଦେଖି ପାରିବେ । ସେଥିପାଇଁ ପ୍ରସ୍ତୁତ ହେଇ ରହିବା ଦରକାର ।

**କ୍ରାନ୍ତିଦର୍ଶୀଙ୍କର ଭବିଷ୍ୟତ ବାଣୀ-**

"ଯୁଗ ପରିବର୍ତ୍ତନର ବ୍ୟବସ୍ଥା ଭଗବାନଙ୍କ ଇଚ୍ଛାରେ ହିଁ ଚାଲିଛି । ଏଥିରେ ସହାୟକ ହେବା ହିଁ ବର୍ତ୍ତମାନ ଯୁଗରେ ଜୀବିତ ପ୍ରବୁଦ୍ଧ ଆତ୍ମାମାନଙ୍କ ପାଇଁ ହେଉଛି ସବୁଠାରୁ ବଡ଼ ଦୂରଦର୍ଶିତା ।" ଏହା ଏକ କ୍ରାନ୍ତିକାରୀ ଭବିଷ୍ୟତବାଣୀ । ସେଦିନର ପ୍ରବଚନରେ ଏହା ଆମକୁ ମିଳିଛି, ସେଥିରେ କୁହାଯାଇଛି-ଆପଣଙ୍କୁ ଆମେ ଦୁଃଖୀ କରି ରଖିବାକୁ ଦେବାନାହିଁ । ବିଭିନ୍ନ ଅସୁବିଧା କଷ୍ଟରେ ରହିବାକୁ ଦେବାନାହିଁ । ଆପଣଙ୍କୁ ଆମେ ଉଚ୍ଚକୁ ଉଠାଇବୁ ପଇସା ଦୃଷ୍ଟିରେ ? ପଇସା ପାଇଁ ତ ଆଗାମୀ ଦିନରେ ଏମିତି ଦିନ ଆସିବ, କିଏ ସୁନା ଅଣ୍ଡାଳିବ । ଟଙ୍କାକୁ ଗଣ୍ଠୁଳିରେ ଭର୍ତ୍ତି କରିଦେଇ ରଖିବା ନାହିଁ । ଏବେ ବି ଧରପଗଡ଼ ଚାଲିଛି । ଆଗାମୀ ଯୁଗରେ କାହା ପାଖରେ କେତେ ଟଙ୍କା ଜମା ହେଇରହିଛି, ତାକୁ ଖୋଜା ଚାଲିବ । ମାଟିତଳେ ପୋତା ହେଇଥିଲେ, ତାକୁ ବି ଖୋଳି ବାହାର କରାଯିବ । ଆମେ ଆପଣଙ୍କୁ ମାଲଦାର କରିଦେବୁ ନାହିଁ । ଯେଉଁ ଜିନିଷର କିଛି ମୂଲ୍ୟନାହିଁ, ତାକୁ ନେଇ ଲାଭ କ'ଣ ? ଆପଣଙ୍କୁ ଆମେ ଭାବନାଶୀଳ ତିଆରି କରିବୁ, ବିଚାରଶୀଳ କରିବୁ, ମହାମାନବ କରିବୁ ପୁଣି ଦେବତା କରିଦେବୁ ।

ପରମପୂଜ୍ୟ ଗୁରୁଦେବ ୧୯୭୦-୭୧ ମସିହାରେ ତତ୍କାଳୀନ ଉପମୁଖ୍ୟମନ୍ତ୍ରୀ ଶ୍ରୀମତୀ ବିଜୟରାଜେ ସିନ୍ଧିଆଙ୍କ ସମ୍ମୁଖରେ ଘୋଷଣା କରିଥିଲେ- "ମୁଁ ଶ୍ରୀରାମଶର୍ମା ଆଚାର୍ଯ୍ୟ ସମସ୍ତ ସମ୍ମୁଖରେ ଘୋଷଣା କରୁଛି କି- ଆଜିଠାରୁ ପଚାଶ ବର୍ଷପରେ ଟଙ୍କାର କୌଣସି ମୂଲ୍ୟ ରହିବ ନାହିଁ । ଟଙ୍କା ବନ୍ଦ ହେଇଯିବ । ଗୋଟାଏ ଆଧ୍ୟାତ୍ମିକ ସାମ୍ୟବାଦ ଆସିବ ।" ସେଦିନ ମଧ୍ୟପ୍ରଦେଶର ଗୋରଖି ମୈଦାନ ଗ୍ୱାଲିୟରଠାରେ ୧୦୮ କୁଣ୍ଡୀୟ ମହାଯଜ୍ଞ ଚାଲିଥିବା ସମୟରେ ଗୁରୁଦେବ ଏ'କଥା କହିଥିଲେ । ଏହି କଥାକୁ ଲେଖକ ପତ୍ରିକାର ସଂପାଦକ ମଧ ସେହି ସମ୍ମେଳନରେ ଉପସ୍ଥିତ ଥିଲେ । ତାଙ୍କର ପିତା- ଗ୍ୱାଲିୟରଠାରେ ଜଜ ଭାବେ କାର୍ଯ୍ୟରତ ଥିଲେ ।

**ମହାମାନବଙ୍କ କ୍ରୋଧପୂର୍ଣ୍ଣ ଦୃଷ୍ଟି ବୁଝନ୍ତୁ**

ଗୋଟିଏ ବାକ୍ୟ ସେଦିନ ପରମପୂଜ୍ୟ ଗୁରୁଦେବ ପ୍ରକାଶ କରିଦେଇଥିଲେ- ଆଗାମୀ ଦିନରେ ସଂସାରରେ କେହି ଜଣେ ବି ବ୍ୟକ୍ତି ଧନୀ ହେଇ ରହିପାରିବେ

ନାହିଁ । ଟଙ୍କା ବାଣ୍ଟି ହେଇଯିବ । ପୁଞ୍ଜି ଉପରେ ସମାଜର ନିୟନ୍ତ୍ରଣ ହେବ । ଆମେ ସବୁ କେବଳ ଜୀବନ ନିର୍ବାହ ପାଇଁ ଅର୍ଥ ସାଧନ ଉପଲବ୍ଧ କରିପାରିବା । ଏହି ପ୍ରସଂଗରେ କୁହାଯାଏ- ଏଇ କେଇଦିନ ତଳେ ଦେଶରେ ବଡ଼ ଆର୍ଥିକ ମହାକ୍ରାନ୍ତି ହେଇସାରିଛି । ଆମର ପ୍ରଧାନମନ୍ତ୍ରୀ- ଅର୍ଥମନ୍ତ୍ରୀ ଗତ ନଭେମ୍ବର ମାସ ଆଠ ତାରିଖ ୨୦୧୬ ମସିହାରେ ଅଚାନକ ବଡ଼ଟଙ୍କାର ନୋଟ ଉପରେ କଟକଣା ଲଗାଇଦେଲେ । ୫୦୦ ଓ ୧୦୦୦ଟଙ୍କିଆ ନୋଟ ବହୁଳ ପରିମାଣରେ ବ୍ୟବହାରକୁ ଆସିଯାଇଥିଲା । ଯାହା ଆତଙ୍କବାଦ, ଡ୍ରଗ ସ୍ମଗଲିଂ ଏବଂ ମାଫିଆରାଜକୁ ବଢ଼ାଇ ଦେଇଥିଲା । ପ୍ରଧାନମନ୍ତ୍ରୀ ଦେଶ ଆଗରେ ଗୋଟିଏ ସନ୍ଦେଶରେ କହିଦେଲେ, ଏହି ଟଙ୍କାକୁ ବ୍ୟାଙ୍କରେ ଜମା କରିଦିଅ । ନିଜ ପାଖରେ ରଖିବାର ଅଛି ତ ଛୋଟ ଛୋଟ ଟଙ୍କା ରଖ । ନୂଆ ନୋଟର ସିରିଜ୍ ଶୀଘ୍ର ଆସିଯିବ । ବୈଧ ଟଙ୍କାକୁ ନିଜ ପାଖରେ ରଖନ୍ତୁ । ଟ୍ୟାକ୍ସ ଚୋରୀ, ଭବନ ନିର୍ମାଣ, ଉଦ୍ୟୋଗରେ, ଅପହରଣ ଅପରାଧୀ ଭଳି କାର୍ଯ୍ୟପାଇଁ ଲୁଚାଇ ରଖାଯାଇଥିବା କୋଟି କୋଟି ଟଙ୍କା ମାଟି ହେଇଗଲା । ରାତି ନଅଟାରେ ଘୋଷଣା କରାଯାଇଥିବା ନୂଆ ନୀୟମ ଅନୁସାରେ ମାତ୍ର ତିନିଘଣ୍ଟାରେ ସେହି ଟଙ୍କାର ମୂଲ୍ୟ ଶୂନ୍ୟ ହେଇଗଲା । ସମୟ ବି ଦିଆଯାଇଥିଲା । ଏହାର ଅବଧି ଓ ସୁଯୋଗ ମଧ ଦିଆଯାଇଥିଲା । ଏବେ ସେହି କଳାଟଙ୍କା ଉପରେ ପ୍ରଶାସନ ଓ ଆୟକର ବିଭାଗର ନଜର ରହିଛି । ଆପଣଙ୍କୁ କ'ଣ ଲାଗୁନାହିଁ, ପୂଜ୍ୟବରଙ୍କ ଘୋଷଣା ଅକ୍ଷରେ ଅକ୍ଷରେ ସାର୍ଥକ ହେଲା । ବାସ୍ତବରେ ଏହି କ୍ରାନ୍ତିକାରୀ ପଦକ୍ଷେପ ଗୋଟାଏ ବିରାଟସ୍ତର ଉପରେ ଆରମ୍ଭ ହୋଇଛି । ଏହା ହେଉଛି- ପରିବର୍ତ୍ତନର ପ୍ରାରମ୍ଭ ।

ସବୁଆଡ଼େ ତ ଗଡ଼ବଡ଼ ଚାଲିଛି । କିନ୍ତୁ କଳାଧନ, ଭ୍ରଷ୍ଟାଚାର, ଭୋଟ ବଦଳରେ ନୋଟ, ମୁନାଫାଖୋର, ଜମାଖୋର, ଲାଞ୍ଚ ଇତ୍ୟାଦିର ଅପରାଧୀଙ୍କ କାରଣରୁ ସମାଜରେ ଘୁଣ ଲାଗିଯାଇଛି । ପ୍ରଗତିର କୌଣସି ଚିହ୍ନ ଦେଖିବାକୁ ମିଳୁ ନାହିଁ । ଏହାର କାରଣ ହେଲା- ଆମେ ଯେତେ ଆଗକୁ ଯାଉଛୁ ସେତିକି ପଛକୁ ଆସୁଛୁ । ଏହି ପଦକ୍ଷେପ ପରେ ସମସ୍ତଙ୍କୁ ଲାଗୁଛି କି ସତକୁ ସତ ଦେଶରେ ପରିବର୍ତ୍ତନର ଧାରା ଆରମ୍ଭ ହେଇଯାଇଛି । ଏହି ପରିବର୍ତ୍ତନ ଆମର ମହାନ ଦେଶପାଇଁ, କ୍ରାନ୍ତିକାରୀ ବଳିବେଦୀ ଉପରେ ଚଢ଼ିଥିବା ହଜାର ହଜାର ସୈନ୍ୟମାନଙ୍କ ପାଇଁ ଅପେକ୍ଷା କରିଛନ୍ତି । ଯେତେଦିନଯାଏ, ସମସ୍ତଙ୍କ ହୃଦୟ ପରିବର୍ତ୍ତନ ନ ହେଇଛି,

କିଛି ବି ହେଇପାରିବ ନାହିଁ । ଏଥିପାଇଁ ଆମକୁ ବୁଝିବାକୁ ହେବ ଯେ, ଏଭଳି ଆର୍ଥିକ ମହାକ୍ରାନ୍ତି ଅତ୍ୟନ୍ତ ଜରୁରୀ ଥିଲା ।

## କିଛିଦିନ ତ ଅସମଞ୍ଜସ ରହିବ-

ଏବେ ଚାରିଦିଗରେ ଅବ୍ୟବସ୍ଥିତ ପରିସ୍ଥିତି ଘେରି ରହିଛି । କିଏ ଏଥିପାଇଁ ସରକାରଙ୍କୁ ଗାଳି ଦେଉଛି, ଯେ ଆଉକିଛି ଦିନ ସମୟ ଦେବା ଦରକାର ଥିଲା ବୋଲି କହିଲେ । ଆଗରୁ ଜଣାଇଥିଲେ, ଆମେ ନିଜର ବ୍ୟବସ୍ଥା କରିଦେଇଥା'ନ୍ତୁ । ଏଇ ତ ଏମିତି ହେଲା ଯେ, ଚୋର ଆସିବା ଆଗରୁ କହି ଦିଆଯାଇଥା'ନ୍ତା ଯେ, ଜିନିଷ ଏଇଠି ସବୁ ରହିଛି । ଆମେ ଚୋରି କରିବାକୁ ଯିବୁ । ଯେଉଁ ସସପେନ୍ସ ରଖାଗଲା, ସେଥିରୁ ଏକାଥରେ ସର୍ଜିକାଲ ଷ୍ଟ୍ରାଇକ୍ ଏମିତି ହେଲା କି ଲୋକେ ନିଜର ହୋସ୍ ଉଡ଼େଇ ଦେଲେ । କେହି କେହି କେତେ ପ୍ରକାର ଅର୍ଥ ବାହାର କଲେ କି, ଏହି ଅବସ୍ଥା ଅଳ୍ପଦିନ ପାଇଁ ରହିବ । ପୁଣି ସେହି ସମୟ ଆସିଗଲା । ଯାହାଦ୍ୱାରା କଳାଧନକୁ ସହଜରେ ଖେଳାଯାଇ ପାରୁଥିଲା । ତାକୁ ଅଟକାଇ ଦିଆଗଲା । ପ୍ରଥମେ ହଜାର ଟଙ୍କିଆ ନୋଟକୁ ଜମା କରି ରଖୁଥିଲେ । ଏବେ ଦୁଇ ହଜାର ଟଙ୍କା ନୋଟକୁ ଏକତ୍ର କରି ରଖୁଛନ୍ତି । ସେମାନେ ବୋଧହୁଏ ଜାଣନ୍ତି ନାହିଁ ଯେ, ବର୍ତ୍ତମାନ ଶାସନ ଚଳାଉଥିବା ସରକାରଙ୍କ ପାଖରେ ତୀର ବି ଅଛି । ସଂପୂର୍ଣ୍ଣ ପ୍ରସ୍ତୁତ ଏକ ସଙ୍ଗେ ଆମର ଶାସକତନ୍ତ୍ର ଠିଆ ହେଇ ରହିଛି । ବ୍ୟାଙ୍କ, ଲକର୍ସ, ଏଟିଏମ୍ ସବୁ ପ୍ରକାର ବ୍ୟବସ୍ଥା ଏମିତି ହେଇଛି କି କେହି ଟଙ୍କାକୁ ଜମାକରି ନିଜ ପାଖରେ ରଖିପାରିବେ ନାହିଁ । ପ୍ଲାଷ୍ଟିକ ମନି ଚାଲିବ । ସମସ୍ତଙ୍କୁ ନୀତି ନୀୟମ ଓ ବ୍ୟବସ୍ଥା ଭିତରେ ଚଳିବାକୁ ହେବ । ଏବେ ଅନ୍ୟ କିଛି ବିକଳ୍ପ ନାହିଁ ।

ରାବଣ ବି ସୁନାର ଲଙ୍କା ଗଢ଼ିଥିଲେ । ସ୍ୱର୍ଗ ପର୍ଯ୍ୟନ୍ତ ଶିଢ଼ି ତିଆରି କରିବାକୁ ଯୋଜନା କରିଥିଲେ । କ'ଣ ତାଙ୍କର ଯୋଜନା ସଫଳ ହେଇପାରିଲା ? ଏବେ ବି ଆମ ଦେଶରେ ଏଭଳି ଅନେକଗୁଡ଼ିଏ ଫାର୍ମହାଉସ ଓ ବଡ଼ବଡ଼ ପ୍ରାସାଦ ପର୍ଯ୍ୟନ୍ତ ତନ୍ତ୍ର ରହିଛି । କହିବାକୁ ଗଲେ, ପ୍ରକୃତରେ ଏ'ଗୁଡ଼ିକ ଭ୍ରଷ୍ଟାଚାରର ଦୁର୍ନୀତିର ନିଅଁ ଉପରେ ଠିଆ ହେଇରହିଛି । ଏବେ ନୂଆକରି ଯେଉଁ ବ୍ୟବସ୍ଥା କରାଯାଇଛି, ସେଥିରେ ନଗଦ ଟଙ୍କା କାରବାର ରୋକିବାକୁ ହେବ । ଏଥିରେ ଜମାଖୋରୀ ଅଟକିବ । ଚୋରୀ ଓ ଟିକସ ଫାଙ୍କି ଅଟକିବ । ଲୋକେ ନିର୍ଭୟ ହେଇପାରିବେ । କିଏ କେତେ ବି ଟଙ୍କା

ସଂଗ୍ରହ କର. ସେ ସବୁ ଶାସକତନ୍ତ୍ରର ନଜରରେ ରହିଯାଉଛି । ତେଣୁ କେହି ଠକାମୀ କରି ରକ୍ଷା ପାଇପାରିବେ ନାହିଁ । ଏହା ହେଉଛି ଆଧ୍ୟାତ୍ମିକ ସାମ୍ୟବାଦର ଶୁଭାରମ୍ଭ ।

ଆମ ନିଜର ପରିବାର- ପରମପୂଜ୍ୟ ଗୁରୁଦେବ ସର୍ବସାଧାରଣଙ୍କଠାରୁ ଦଶ ପଇସା, କୋଡ଼ିଏ ପଇସା, ଏକଟଙ୍କା ଏବଂ ଗୋଟିଏ ଦିନର ରୋଜଗାରକୁ ସଂଗ୍ରହ କରି ସେଥିରେ ଏହି ବୃହତ ମିଶନକୁ ଠିଆକରି ଦେଇଛନ୍ତି । ଏବେ ବି ସେହି ବ୍ୟବସ୍ଥା ଚାଲୁ ରହିଛି । ଏହି ଆଧାରରେ ଭାରତ ତଥା ବିଶ୍ୱର କୋଟି କୋଟି ଲୋକଙ୍କ ଶ୍ରମରୁ ଉପାର୍ଜିତ ଅର୍ଥରୁ ଏହି ତନ୍ତ୍ର ଠିଆ ହେଇପାରିଛି । ଆମର ପ୍ରଧାନମନ୍ତ୍ରୀ ଜନଧନ ଯୋଜନା ପ୍ରସ୍ତୁତ କରିଛନ୍ତି । ସମସ୍ତଙ୍କୁ ବ୍ୟାଙ୍କ ଖାତା ଖୋଲିବାକୁ ଏବଂ ତା' ମାଧ୍ୟମରେ ସୂକ୍ଷ୍ମ ଆର୍ଥିକ ରୋଜଗାରକୁ ଗୁରୁତ୍ୱ ଦେଇଛନ୍ତି । ଏହାର ଫଳ ସ୍ୱରୂପ ଗୋଟାଏ ସର୍ଜିକାଲ୍ ଷ୍ଟ୍ରାଇକ୍‌ର ପ୍ରଭାବ ଅନେକ ଜମାଖୋରଙ୍କ ଉପରେ ପଡ଼ିଛି । ଏହାଦ୍ୱାରା କ'ଣ ସବୁ କଳାଧନକୁ ଉଦ୍ଧାର କରାଯାଇ ପାରିବ ? ସମ୍ଭବତଃ ନା । କିନ୍ତୁ ତାହା କଳାଧନରୂପୀ ମହାଦୈତ୍ୟର ମହାଦୁର୍ନୀତିର ନିଅଁକୁ ହଲାଇ ଦେବ । ଏବେ ଧୀରେ ଧୀରେ କେତୋଟି କ୍ରାନ୍ତି ଆସିବ ଏବଂ ମହା ପରିବର୍ତ୍ତନକୁ ଜନ୍ମଦେବ । ଏଥିପାଇଁ ନଅ-ଦଶବର୍ଷ ଲାଗିପାରେ, କିନ୍ତୁ ରାଷ୍ଟ୍ର ସୁରକ୍ଷିତ ରହିବ । ଅର୍ଥ ବ୍ୟବସ୍ଥା ସୁଦୃଢ଼ ହେବାରେ ଲାଗିବ ଏବଂ ଦେଖୁଦେଖୁ ଆମ ଦେଶକୁ ସୁନାର ପକ୍ଷୀ ହେଇପାରିବ ।

ନୂଆକ୍ରାନ୍ତି ଯାହା ଆସୁଛି- ଆମ ଦେଶକୁ ମହାନତମ ଦେଶ ଭାବରେ ପ୍ରତିଷ୍ଠିତ କରିବାପାଇଁ ଅନେକ କ୍ରାନ୍ତି ଆସିବ, ଆମର ଶ୍ରମ ଓ ରକ୍ତଦାନ ଫଳରେ ଏହି ଦେଶର ମାଟି ସ୍ୱର୍ଣ୍ଣିଳ ହେବ । ଏବେ ସମୟ ଆସିଛି, ପ୍ରଥମେ ଆମକୁ ଯୌତୁକ ଓ ଖର୍ଚ୍ଚବହୁଳ ବାହାଘରକୁ ବନ୍ଦ କରିବାକୁ ହେବ । ଯେଉଁ ଦିନ ଏହି ଟଙ୍କାବନ୍ଦୀ ନିଷ୍ପତି ଘୋଷଣା କରାଯାଇଥିଲା, ତା'ପରେ ତିନିଦିନ ମଧ୍ୟରେ ୧୨୫ ଲକ୍ଷରୁ ଅଧିକ ଏହିପରି ବାହାଘର କେବଳ ଦିଲ୍ଲୀରେ ହେବାର ଥିଲା । ଏଥିରୁ ଆପଣ କଳ୍ପନା କରି ପାରୁଥିବେ ଯେ, ସେମାନଙ୍କ ହୃଦକମ୍ପନ କିଭଳି କେତେ ପରିମାଣରେ ହେଇଥିବ । କିନ୍ତୁ କ'ଣ କରାଯିବ ? ମହାକାଳ ବା ସମୟ ତ ତାହା ହିଁ ଚାହୁଁଛି, ଯାହା ଆଦର୍ଶ ବିବାହ ବ୍ୟବସ୍ଥା ମଧ୍ୟରେ ହେବା ଉଚିତ । ଅନାବଶ୍ୟକ ଅପବ୍ୟୟ ବନ୍ଦ ହେଲା । ଗରିବଙ୍କର ଝାଳ ଓ ରକ୍ତରେ ଗଢ଼ି ଉଠିଥିବା ଧନୀମାନଙ୍କର ସୁଉଚ୍ଚ ପ୍ରାସାଦର ମଜା କେବଳ ଧନୀମାନେ ପାଆନ୍ତି । ସେହି ଧନୀଲୋକଙ୍କର ଲୋଭର ଅନ୍ତ ଘଟୁ ।

ମଧ୍ୟମ ବର୍ଗର ଲୋକେ ହେଇପାରନ୍ତି, ଆମେ ତ ସେମିତି କିଛି କରିନାହୁଁ । କେବଳ ତାଙ୍କୁ ସହାୟତା କରିଥିଲୁ, ଧନବାନଙ୍କୁ ଅଧିକ ଧନଶାଳୀ କରିବାରେ ତାଙ୍କୁ ଅନୁକରଣ କରିବାରେ ଦରକାରଠାରୁ ଅଧିକ ଖର୍ଚ୍ଚ କରିବାରେ ।

ଆଗାମୀ କ୍ରାନ୍ତି ଏହିଭଳି ହେବ- ସହରଠାରୁ ଅଧିକ ଅର୍ଥ ବ୍ୟବସ୍ଥା ଗ୍ରାମାଞ୍ଚଳରେ ହେବ । କୁଟୀର ଶିଳ୍ପ ପୁଣି ବୃଦ୍ଧି ପାଇବ । ସମସ୍ତଙ୍କୁ ରୋଜଗାର ମିଳିବ । ଯେଉଁଥିପାଇଁ ଏହି ଯୁବକ୍ରାନ୍ତି ବର୍ଷର ଆମେ ସ୍ୱାବଲମ୍ବୀ ଲୋକସେବକ ମଣ୍ଡଳୀର ନିର୍ମାଣ କଥା କହିଛୁ । ସାଧାରଣ ଲୋକେ ଶ୍ରମକୁ ମହତ୍ୱ ଦେବେ । ଗୁଣ୍ଡାଗିରି, ମହିଳାଙ୍କ ଉପରେ ଅତ୍ୟାଚାର ବନ୍ଦ ହେବ । ମହିଳାମାନେ ଶିକ୍ଷା ବିଦ୍ୟାର ସମନ୍ୱୟ ଜୀବନବିଦ୍ୟା ଶିକ୍ଷାଲାଭ କରିବେ । ପରିବର୍ତ୍ତନ ତ ଖୁବ୍ ଦ୍ରୁତ ଗତିରେ ହେବ । ନିର୍ବାଚନ ବ୍ୟବସ୍ଥାରେ ବି ପରିବର୍ତ୍ତନ ଆସିବ । ଏବେ ନିର୍ବିରୋଧରେ ଚୟନ ହେଉଥିବା ନୀତିବାନ ନେତାଙ୍କର ସଂଖ୍ୟା ବୃଦ୍ଧି ପାଇବ । ଦେଖୁ ଦେଖୁ ଯୁଗ ପରିବର୍ତ୍ତନର ଆଧାରଶିଳା ରଖି ଦିଆଯିବ । ଏ'ସବୁ ୨୦୧୫-୨୦୨୬ ମଧ୍ୟରେ ହିଁ ଦେଖିବାକୁ ମିଳିବ । ବର୍ତ୍ତମାନର କ୍ରାନ୍ତି ଏକ ମହାକ୍ରାନ୍ତିର ଶଂଖଧ୍ୱନି ବଜାଇ ଆସିଛି । ଆସନ୍ତୁ ମଙ୍ଗଳାଚରଣରୁ ଏହାକୁ ଅଭିନନ୍ଦନ ଜଣାଇବା ।



ଝାନ୍ସୀ ରାଣୀ ଲକ୍ଷ୍ମୀବାଈ

# କ୍ରାନ୍ତିର ରେଲଗାଡ଼ି ଚାଲିଲା

**ନୈତିକ ଆଧାରରେ ଆମୂଳଚୂଳ ପରିବର୍ତ୍ତନ ହେବ-**

ପୂର୍ବରୁ କ୍ରାନ୍ତିଗୁଡ଼ିକ ସଂପର୍କରେ ଆଲୋଚନା କରାଯାଇଥିଲା । ଏହା କେମିତି ଆସେ ଓ ପୁଣି କେମିତି ପରିବର୍ତ୍ତନକୁ ଧରି ଚାଲିଆସେ ଏକଥା ମଧ୍ୟ କୁହାଯାଇଥିଲା । ବିଗତ ନଭେମ୍ବର ୮ ତାରିଖ ୨୦୧୬ ମସିହା ପରେ ଦେଶରେ ଏତେ ପରିମାଣରେ ପରିବର୍ତ୍ତନ ଆସିଛି, ଯାହାକୁ ଦେଖି ଲାଗୁଛି, ଏହି ଦେଶ ଯୁଗ ପରିବର୍ତ୍ତନର ପ୍ରକ୍ରିୟାରେ ଅଗ୍ରଣୀ ଭୂମିକା ତୁଲାଉଛି । ପୂଜ୍ୟବର ଗୁରୁଦେବ ଲେଖିଛନ୍ତି- "ଭଗବାନଙ୍କର ଇଚ୍ଛା ଓ ମହାକାଳଙ୍କ ସଂକଳ୍ପ କାରଣରୁ ଯୁଗ ପରିବର୍ତ୍ତନର ବ୍ୟବସ୍ଥା ପ୍ରସ୍ତୁତ ହେଉଛି । ଏଥିରେ କିଏ ବି ବାଧକ ନୁହେଁ । ସହାୟକ ହେଲେ ହିଁ ଦୂରଦର୍ଶିତା ପୂର୍ଣ୍ଣ କାର୍ଯ୍ୟହେବ । ସେ ୧୯୩୭ ମସିହାରେ ଅଖଣ୍ଡ ଜ୍ୟୋତିର ଆରମ୍ଭରୁ ନିରନ୍ତର ଅଖଣ୍ଡ ଜ୍ୟୋତି ପତ୍ରିକାର ପୃଷ୍ଠାରେ ସ୍ୱାଧୀନତାର ପୂର୍ବରୁ ଏବଂ ପରେ ଆସୁଥିବା ଯୁଗ ପରିବର୍ତ୍ତନ ସମ୍ବନ୍ଧରେ ଚର୍ଚ୍ଚା କରୁଥିଲେ ।

**ଗୋଟିଏ ବିଶେଷ ସମୟ-**

ଏହି ବସନ୍ତ ଗୋଟିଏ ବିଶିଷ୍ଟ ଅବସର ନେଇ ଆସିଛି । ଆମମାନଙ୍କ ପାଇଁ ଏକ ଆହ୍ୱାନ ଦେଉଛି କି ଆମକୁ ପ୍ରଚଳିତ ପ୍ରବାହରେ ଚାଲିବାକୁ ହେବ ଅବା ପରିବର୍ତ୍ତନର ପ୍ରକ୍ରିୟାରେ ଅଂଶୀଦାର ହେବା । ଏ'ଦିଗରେ ବିରୋଧ କରି ଆକ୍ରୋଶ ବ୍ୟକ୍ତ କରିବା, ଏହାର ଚୟନ ଆମକୁ ହିଁ କରିବାକୁ ପଡିବ ।

ପ୍ରଥମ ପରିବର୍ତ୍ତନ ଆର୍ଥିକ କ୍ଷେତ୍ରରେ ଆସିଛି । ଯାହା ଆମକୁ ପରିଗ୍ରହ ପାଠ ପଢ଼ାଇଥାଏ । ଆର୍ଥିକ ସଂଚୟ କରନାହିଁ । ଅନାବଶ୍ୟକ ଅର୍ଥ ସଂଗ୍ରହ କରନାହିଁ । ଧନକୁ ସମାଜରେ ବାଣ୍ଟିହେଇ ଯିବାକୁ ଦିଅ । ଏହି ସଂଦେଶ ଏଥିରୁ ମିଳିଥାଏ । ଆମ ଦେଶର ନାଗରିକମାନେ ଅସୁବିଧାଗୁଡ଼ିକ ଧରିରଖି ଏହାକୁ ଭୁଲ ସମୟରେ

ଭୁଲ ଢ଼ଙ୍ଗରେ କରାଯାଇଥିବା କାର୍ଯ୍ୟବୋଲି ଭାବିଥା'ନ୍ତି । ରାଜନୀତି ପ୍ରତ୍ୟେକ ଘଟଣାକ୍ରମକୁ ନିଜ ରଂଗୀନ ଚଷମାରେ ଦେଖିଥାଏ । ସମସ୍ତେ ନିଜ ନିଜ ଦୃଷ୍ଟିରେ ଅର୍ଥ କ୍ଷେତ୍ରରେ କ୍ୟାସ୍‌ଲେସ କ୍ରାନ୍ତିକୁ ଦେଖିଛନ୍ତି । କିଏ କହିଲା କି ଆମ ଦେଶ ଗ୍ରାମୀଣ ପ୍ରଧାନ ଦେଶ । ସେଠାରେ କେତେ ଅସୁବିଧା ରହିଛି । ଏହାକୁ ଅନୁମାନ କରିବା କ୍ଷମତା ଦେଶ ଚଲାଇବା ଲୋକଙ୍କୁ ଜଣାନାହିଁ । ପୂର୍ବ ପ୍ରସ୍ତୁତି ନାହିଁ । ଅଚାନକ ଏଭଳି ବିସ୍ଫୋରଣ କାହିଁକି କରାଗଲା ? ଆମର ପ୍ରଧାନମନ୍ତ୍ରୀଙ୍କ ଉପରେ ଦୋଷାରୋପ କରୁଥିବା ଲୋକ ବି ଆମ ଦେଶରେ କମ ନାହାନ୍ତି ।

**ଲାଭ କ'ଣ ହେଲା ?**

ଆମକୁ ଦେଖିବାକୁ ହେବ ଯେ, ଏହି ଆର୍ଥିକ କ୍ରାନ୍ତି ଆମକୁ ନ୍ୟୁନତମ ସାଧନରେ ଜୀବନ ଜୀଇଁବା ଶିଖାଇଛି । ଆମକୁ ଧନ ପ୍ରତି ଆଦର ଶିଖାଇଛି । ଅନର୍ଥ ନ ହେଉ, ଏଭଳି ଅର୍ଥ ଆମକୁ ରଖିବା ଦରକାର, ଏ'କଥା ବୁଝାଇଦେଲା । କିଛି ଅସୁବିଧା ତ ହେଇଛି, କ୍ରାନ୍ତିକାରୀ କାର୍ଯ୍ୟରେ ତ ହେବା ସ୍ୱାଭାବିକ । କିନ୍ତୁ କଳ୍ପନା କରନ୍ତୁ କି ଯଦି ସମସ୍ତେ ମିଶି ଏହି କ୍ରାନ୍ତିକୁ ବ୍ୟାପକ କରନ୍ତେ, ତେବେ କ'ଣ ହେଇଯିବ ?

(କ) ଆପଣଙ୍କ ଅନାବଶ୍ୟକ ଧନ ବା ଟଙ୍କାକୁ ସୁରକ୍ଷା ଉଦ୍ଦେଶ୍ୟରେ ଖର୍ଚ୍ଚ କରିବାକୁ ପଡ଼ିବ ନାହିଁ । ଆପଣଙ୍କ ଟଙ୍କା ବ୍ୟାଙ୍କରେ ଅତି ସୁରକ୍ଷିତ ଅବସ୍ଥାରେ ରହିପାରିବ ।

(ଖ) ଆପଣଙ୍କ ଆବଶ୍ୟକତା କମିକମି ଯିବ ।

(ଗ) ଚୋରୀ, ଠକାମୀ, ଡକାୟତି ଭଳି ଘଟଣା କମିଯିବ । ଆଉ ଭୟ ରହିବ କେଉଁଠି ?

(ଘ) ବେଇମାନୀ ସଂପତ୍ତି ବଢ଼ାଇବାର ଲାଳସା ସରିଯିବ । ଆବଶ୍ୟକତାରୁ ଅଧିକ ଗାଡ଼ି, ଘର, ଅନ୍ୟାନ୍ୟ ସୁଖ ସୁବିଧା ଏବଂ ସମାଜର ପ୍ରତ୍ୟେକ ବର୍ଗ ଦୃଷ୍ଟି ଆକର୍ଷଣ କରିବ ନାହିଁ ।

(ଙ) ଦୁରାଚାର, ଅନୈତିକତାରେ ପରାକାଷ୍ଠା ଥିବା ଘଟଣାମାନ କମି କମି ଯିବ । ନିଶା ନିବାରଣ ଜୋରଦାର ଲାଗୁ ହେବ ଏବଂ ସମାଜ ନ୍ୟାୟୋଚିତ ବ୍ୟବସ୍ଥାରେ

ଚାଲିବାରେ ଲାଗିବ । କ'ଣ ଆପଣଙ୍କୁ ଲାଗୁନାହିଁ କି ଏହି ଧରିତ୍ରୀ ମାଆ ଉପରେ ସ୍ୱର୍ଗପରି ବ୍ୟବସ୍ଥା ଅବତରଣ ହେଉଛି ?

**ଏକ ଆଦର୍ଶର ଉଦାହରଣ-**

ଚାଣକ୍ୟ-ଚନ୍ଦ୍ରଗୁପ୍ତ ସଂବାଦରେ ଚନ୍ଦ୍ରଗୁପ୍ତଙ୍କଦ୍ୱାରା ଜଣେ କୃଷକର କ୍ଷେତରୁ ଫସଲକୁ କାଟି ନିଆଯାଇଛି । ରାଜ୍ୟର ସେନାଙ୍କ କାରଣରୁ ଏଭଳି ବ୍ୟବସ୍ଥାର ଚର୍ଚ୍ଚା ଚାଲିଲା । ରାଜାଙ୍କୁ ପ୍ରଶ୍ନ ଥିଲା-ଚାଷୀକୁ ଫସଲ ମୂଲ୍ୟ ଦିଆ ହେଇଥିଲା କି ? ଚନ୍ଦ୍ରଗୁପ୍ତ କହିଥିଲେ- ତା'ର ମୂଲ୍ୟ ଦିଆଯିବ । ଆଚାର୍ଯ୍ୟ ଚାଣକ୍ୟ କହିଲେ ପ୍ରତ୍ୟେକ ବସ୍ତୁର ମୂଲ୍ୟ ରହିଛି । ମୂଲ୍ୟର ଅର୍ଥ ହେଉଛି ଅର୍ଥ । ଧର୍ମ, କାମ-ଅର୍ଥ ଉପରେ ହିଁ ଟେକିହୋଇ ରହିଥାଏ । ଅର୍ଥର ବ୍ୟବହାର ଧର୍ମପୂର୍ବକ ହେବା ଦରକାର । ବିନା ମୂଲ୍ୟ ପ୍ରଦାନରେ ଅନ୍ୟର ଜିନିଷକୁ ନେବା ଅର୍ଥ ଏକ ପ୍ରକାର ଅପହରଣ । ଏହା ନିଜର ବିନାଶକୁ ନିମନ୍ତ୍ରଣ କରି ଆଣେ । । ମଗଧ ସମ୍ରାଟ ଚନ୍ଦ୍ରଗୁପ୍ତ ବଡ଼ ଅଡୁଆ ପରିସ୍ଥିତିରେ ପଡ଼ିଗଲେ । ଆଚାର୍ଯ୍ୟଙ୍କଦ୍ୱାରା କରାଯାଉଥିବା ଅଭିଯୋଗ, ଅନ୍ୟପଟେ ଜଣେ ଉଚ୍ଚବର୍ଗର ଶ୍ରେଷ୍ଠୀ ଲୋକକୁ ଦଣ୍ଡ ବିଧାନ । ପୁଣି ଚନ୍ଦ୍ରଗୁପ୍ତ ଯେତେବେଳେ ଆଚାର୍ଯ୍ୟ ଚାଣକ୍ୟଙ୍କୁ ପଚାରିଲେ ଯେ, ସମାଜକୁ ଧନଦାନ କରୁଥିବା ଶ୍ରୀମନ୍ତ ବର୍ଗର ଅପମାନ କାହିଁକି କରାଯାଏ ? ଆଚାର୍ଯ୍ୟ କହିଲେ- "ସେମାନଙ୍କପାଇଁ ବ୍ୟକ୍ତିନୁହେଁ ଦେଶ ହେଉଛି ମହାନ । ସେମାନଙ୍କର ନିଷ୍ଠା ସମାଜର ଉତ୍କର୍ଷରେ ରହିଛି । ଯାହା ଚନ୍ଦ୍ରଗୁପ୍ତଙ୍କଠାରେ ବା ଧନଦାନ କରିଥିବା ଶ୍ରେଷ୍ଠିବର୍ଗଠାରେ ନାହିଁ । ଏଥିପାଇଁ ସେ କର ବ୍ୟବସ୍ଥା, ଦାନ ବ୍ୟବସ୍ଥା, ଏକ ପ୍ରକାରରେ କହିବାକୁ ଗଲେ କାର୍ପୋରିଟ୍ ସୋଶାଲ ଦାୟିତ୍ୱର ଚିନ୍ତା କରନ୍ତି । କର ଓ ଦାନ ହିଁ କୌଣସି ରାଜ୍ୟର ଆଧାର ହୁଏ । ଦାନରୁ ହିଁ ସମାଜ ଚଳେ । ଏ'ବ୍ୟବସ୍ଥା ଭାଙ୍ଗିଗଲେ, ଅନର୍ଥ ହିଁ ଅନର୍ଥ ହେଇଯିବ । ଏଥିପାଇଁ ରାଜା କର ନେଉଥାନ୍ତି । ସମାଜକୁ ଦାନ ଦିଅନ୍ତି । ଅପରିଗ୍ରହୀ ବ୍ରାହ୍ମଣ ଚାଣକ୍ୟ ପଚାରିଲେ- "ମୁଁ ସେହି ବେପାରୀମାନଙ୍କୁ କେମିତି ସମ୍ମାନ କରିପାରିବି ? ଯେତେବେଳଯାଏ ରାଜ୍ୟରେ ଗୋଟିଏ ଲୋକ ଯଦି ଉପବାସ ଥାଏ ? ସୁଖ, ଶିକ୍ଷକ ଓ ସମ୍ରାଟଙ୍କ ଭାଗ୍ୟରେ ନ ଥାଏ । ପ୍ରଜାଙ୍କ ହିତରେ ହିଁ ରାଜାଙ୍କର ସୁଖଥାଏ । ପ୍ରଜାଙ୍କୁ ସୁଖୀ କରିବା ହେଉଛି ରାଜାଙ୍କର ପ୍ରଥମ କର୍ତ୍ତବ୍ୟ ।

ଏହି କଥା ଏଠାରେ ଏଥିପାଇଁ ଦିଆଗଲା କି ଆଜି ସେହି ଘଟଣାକ୍ରମ ପୁଣିଥରେ ଦୋହରାଇ ଦିଆଯାଉଛି । ପରୋକ୍ଷରେ ବିଷ୍ଣୁଗୁପ୍ତ ହିଁ ମହାକାଳ ଭାବରେ ରାଜ୍ୟକୁ ସଞ୍ଚାଳନ କରୁଥିବା ଚନ୍ଦ୍ରଗୁପ୍ତଙ୍କଦ୍ୱାରା ଏହି କାର୍ଯ୍ୟକୁ କରାଉଥିଲେ । ଯେଉଁଥିରୁ ଅର୍ଥ ଅନର୍ଥ ହୋଇ ନ ଯାଏ । ପ୍ରକୃତ ସୁଖ ପ୍ରଜାଙ୍କୁ ବି ମିଳୁ ଏବଂ ଶାସନ ଅଧିକାରୀଙ୍କୁ ବି ମିଳୁ । ଅର୍ଥର ସୁନିୟୋଜନ ହେଉ ।

ଆମର କର୍ତ୍ତବ୍ୟ-

ଆପଣମାନଙ୍କୁ କ'ଣ ଏମିତି ଲାଗୁନାହିଁ କି, ଲାଇସେନ୍ସ ରାଜ, ପ୍ରତ୍ୟେକ ଜାଗାରେ ଲାଞ୍ଚ, ଜମାଖୋରୀ, ବଢ଼ି ଚାଲିଥିବା ଲୋଭଦ୍ୱାରା ଗୋଟାଏ ଅରାଜକତା ଭରା ପରିବେଶ ତିଆରି ହେଇଯାଇଥିଲା । ନୋଟବନ୍ଦୀ ହେବା ଫଳରେ ଅନେକ ବଡ଼ ପରିମାଣରେ ଅର୍ଥ ବିଭିନ୍ନ ସ୍ଥାନରେ ଧରା ହେଉଛି । ଏଥିରୁ ଜଣାପଡୁଛି, ଶାସକୀୟ ବ୍ୟବସ୍ଥା- ନୋଟବନ୍ଦୀ ହେବା ଯଥେଷ୍ଟ ହେଇନାହିଁ । ଏକ ସୁଚାରୁ ତନ୍ତ୍ର ସମ ବିତରଣର ବି ହେବା ଉଚିତ । ଯେକୌଣସି ଅଧିକୃତ ବ୍ୟକ୍ତି ନିଜର ପ୍ରାପ୍ୟ ସଂପତ୍ତିରୁ ବଞ୍ଚିତ ନ ହେଉ । ତା' ସଙ୍ଗେସଙ୍ଗେ ଲୋକମାନଙ୍କର ମାନସିକତା ବି ବଦଳୁ । ଏକ ବିଲକ୍ଷଣ ବିଚାର କ୍ରାନ୍ତି ଆଣିବାକୁ ହେବ କି ସର୍ଟକଟରେ ଏହି ଦେଶର କାମ ସଫଳ ହେଇପାରିବ ନାହିଁ ।

ଆମେ ବୁଝିଛୁ ଯେ, ଧାଡ଼ିରେ ଠିଆହେଇ କିଛି ଲୋକ ଟଙ୍କାପାଇଁ ଅନେକ ଅସୁବିଧାର ସମ୍ମୁଖୀନ ହେଇଛନ୍ତି । ତା'ସତ୍ତ୍ୱେ ବି ସେମାନେ ତାଙ୍କର ଆବଶ୍ୟକତାକୁ ପୂରଣ କରିବା ପାଇଁ ଅର୍ଥ ପାଇପାରି ନାହାନ୍ତି । ଏହାସତ୍ତ୍ୱେ ଦେଶର ବିଭିନ୍ନ କୋଣରେ ଥିବା ଲୋକେ ବି ନିଜର ଧୈର୍ଯ୍ୟ ଦେଖାଇଛନ୍ତି । ପାରସ୍ପରିକ ତାଳମେଳ ରଖାଯାଇଛି । ମାଇକ୍ରୋ ଇକୋନୋମିରେ କାମ କରୁଥିବା ଆମର ଗୃହିଣୀମାନେ ନିଜର ଅର୍ଥ ବ୍ୟବସ୍ଥାକୁ ସମ୍ଭାଳି ନେଲେ । ସେଠାରେ ଅରାଜକତା ନ ଥିଲା । କିନ୍ତୁ ଶାସକଙ୍କୁ ଏହା ମାନିବାକୁ ପଡ଼ିବ ଯେ, ସେମାନେ ପୂର୍ବ ପ୍ରସ୍ତୁତହେଇ ଯଥେଷ୍ଟ ବ୍ୟବସ୍ଥା କରିପାରି ନାହାନ୍ତି । ସଂଭବତଃ ଏଭଳି ବ୍ୟବସ୍ଥା ନ କରିବାର କାରଣ ଥିଲା ଯେ, ସାଧାରଣ ଲୋକଙ୍କୁ ଏ'କଥା ସୂଚନା ମିଳି ଗଲେ, ସବୁ ବିଭ୍ରାଟ ହେଇପାରେ । ଏବେ ସମସ୍ତେ ଶିକ୍ଷା ପାଇଗଲେ, ଶାସକଦଳ ସହିତ ସାଧାରଣ ଜନତା । ଏବେ ଗାଡ଼ି ବ୍ୟବସ୍ଥିତ ଢ଼ଙ୍ଗରେ ଚାଲିବା ଦରକାର । କୌଣସି ଲୋକ ଅଭାବଗ୍ରସ୍ତ ନ ହୁଅନ୍ତୁ । କେହି ବି

ପରିଗ୍ରହ କାରଣରୁ ଅନର୍ଥର ଶିକାର ନ ହେଉ । କିନ୍ତୁ ଧ୍ୟାନ ଶାସନ ଉପରେ ରଖିବାକୁ ହେବ ।

ପ୍ରକୃତ ବିଚାରକ୍ରାନ୍ତି-

ଆମ ଦେଶ ଏବେ ଏବେ ଗଣତନ୍ତ୍ର ଦିବସ ୬୭ତମ ଉତ୍ସବ ପାଳନ କରିସାରିଛି । ଏହା ବିଶ୍ୱର ଏକମାତ୍ର ଏଭଳି ବ୍ୟବସ୍ଥା, ଯାହା ପ୍ରଜାତନ୍ତ୍ରର ମୂଲ୍ୟ ଉପରେ ଲଗାତାର ଚାଲିବାରେ ଲାଗିଛି । ଆଧ୍ୟାତ୍ମିକତା ଏହାର ପ୍ରତ୍ୟେକ କୋଣରେ ରହିଛି । ରାଷ୍ଟ୍ରଭକ୍ତି ବି କୋଣ ଅନୁକୋଣରେ ରହିଛି । ଆମର ସୈନିକ ଯିଏ ଦେଶର ସୀମାକୁ ରକ୍ଷା କରିଥା'ନ୍ତି, ନିଜ ଜୀବନକୁ ବଳି ଦେବାକୁ ସର୍ବଦା ପ୍ରସ୍ତୁତ ଥା'ନ୍ତି, ସେମାନେ ହେଉଛନ୍ତି ଆମ ଦେଶର ନାୟକ । ହୀରୋ ବା ରୋଲ ମଡ଼େଲ । ତାଙ୍କପାଇଁ ଆମେ ସୁରକ୍ଷିତ ରହିଚୁ । ଆମ ପାଖରେ ସବୁଠାରୁ ବଡ଼ ଶକ୍ତି ହେଲା ୬୫% ଯୁବଶକ୍ତି । ଆପଣ କଳ୍ପନା କରି ପାରନ୍ତି, କି କେତେ ବଡ଼ ଶକ୍ତି-ବିଭୂତି ଆମ ପାଖରେ ରହିଛି । ଇଚ୍ଛାଶକ୍ତି ରଖିଥିବା ଲୋକଙ୍କର ଅଭାବ ନାହିଁ । କିନ୍ତୁ ଆମେ ଅପବାଦକୁ ନିୟମ ମାନି ବସିଯାଉଛୁ । ସମସ୍ତେ ବେଇମାନ ନୁହନ୍ତି । କିଏ ଟିକସ୍ ଫାଙ୍କି ଦେଇ ଆରାମରେ ନିଦରେ ଶୋଇବାକୁ ଯାଇପାରେ କି ? କେହି ଅନ୍ୟର ଧନ୍ୟକୁ ଚୋରାଇ ନେଇ ସନ୍ତୋଷରେ ରହିପାରେ କି ? ଯଦି ସେଭଳି କିଛି ଲୋକ ଥା'ନ୍ତି, ସେମାନଙ୍କୁ ବଦଳା ଯାଇପାରିବ- ପ୍ରକୃତ ବିଚାରକ୍ରାନ୍ତି ଦ୍ୱାରା ।

ଏବେ ସାମାଜିକ କ୍ରାନ୍ତିର ପାଳି-

ଏହି ଶୃଙ୍ଖଳାରେ ବିଚାରକ୍ରାନ୍ତିର ଆର୍ଥିକପକ୍ଷ ପରେ ସାମାଜିକ ପକ୍ଷ ଆସେ । ଏଥିରେ ଯୌତୁକ ଓ ବିବାହରେ ଅପବ୍ୟୟ କାହାକୁ ପ୍ରଭାବିତ କରେ, ତାହା ଜଣାପଡ଼େ ନାହିଁ । କୋଟିକୋଟି ଟଙ୍କା ଦେଶର ରାଜସ୍ୱରୁ କଳାଧନ ମାଧ୍ୟମରେ ତାଙ୍କ ପାଖକୁ ଚାଲିଯାଏ । ଯେତେବେଳେ ଆମର ଦେଶରେ ଆର୍ଥିକ କ୍ରାନ୍ତି ହେଉଛି, ସେହି ସମୟରେ ଦକ୍ଷିଣ ଭାରତର ଜଣେ ପୂର୍ବତନ ମନ୍ତ୍ରୀ ୨୦୦ କୋଟି ଟଙ୍କା ଖର୍ଚ୍ଚକରି ନିଜର ଝିଅର ବାହାଘର କରିଦେଲେ । ସେମାନେ ବୁଡ଼ି ମରିଯିବା ଦରକାର । ବାସ୍ତବରେ ସବୁଠାରୁ ବଡ଼ କ୍ରାନ୍ତି ଏହା ହେବ, ଯେତେବେଳେ ଆଦର୍ଶ ବିବାହର ପ୍ରଚଳନ ଆରମ୍ଭ ହୋଇଯିବ । ଏହି ଦେଶର ସୌଭାଗ୍ୟ ସେତେବେଳେ ଉଦୟ ହେବ, ଯେତେବେଳେ ପ୍ରତ୍ୟେକ ଧନୀ ଓ ଶ୍ରୀମନ୍ତ ରାଜନେତା ଏବଂ ସୌଖୀନ ଜୀବନ

ଯାପନ କରୁଥିବା ନାଗରିକମାନେ ଏକପ୍ରକାର ବିବାହ ସଂପନ୍ନ କରିବେ, କରାଇବେ । ସେମାନେ ଗୋଟାଏ ନମୁନା ପ୍ରଦର୍ଶିତ କରିବେ । ଏବେ ପର୍ଯ୍ୟନ୍ତ ସବୁ କଳାଧନ ବାହାରି ପାରିନାହିଁ । ଏହା ତ ମନଭିତରୁ ବିବେକ ଜାଗ୍ରତ ହେବା ସହିତ ଉପର ସ୍ତରରୁ ଅଂକୁଶ ଲାଗିଲେ ହିଁ ସମ୍ଭବ ହେଇପାରିବ । ଯେତେବେଳେ ଧନ କଳା ହେଇଯାଏ, ସେତେବେଳେ ଲକ୍ଷ୍ମୀମାତାଙ୍କୁ ଅପମାନ ହୁଏ । ଏଥିରେ ମଦ୍ୟପାନ ଓ ଅପବ୍ୟୟ ପ୍ରଦର୍ଶନ କରାଯାଉଛି । ଟଙ୍କାକୁ ଏମିତି ଭାବରେ ଫିଙ୍ଗାଯାଉଛି, ଯେମିତି ଦୀପାବଳୀରେ ଫୋଟକା ଫୁଟାଯାଏ । ଯେତେବେଳେ ବିବେକ ଜାଗ୍ରତ ହେବ, ସେତେବେଳେ ଏସବୁ କୁକର୍ମ ଦୂରେଇଯିବ ।

ଆମେ ରାଷ୍ଟ୍ରୀୟ ଧର୍ମ ପାଳନ କରିବା । ଯାହା ଆମ ପାଖରେ ଅଧିକ ଥିବ, ତାକୁ ରାଷ୍ଟ୍ରଧର୍ମ ପାଳନ କ୍ଷେତ୍ରରେ ଉପେକ୍ଷିତ-ଗରିବମାନଙ୍କ ସେବାରେ ଲଗାଇ ଦିଆଯାଇ ପାରିବ ।

**ଗାୟତ୍ରୀ ପରିବାର ମୂଳମନ୍ତ୍ର-**

ଆମର ପରମପୂଜ୍ୟ ଗୁରୁଦେବ ୧୯୪୭ ମସିହାରେ ଏହି ସମସ୍ୟାଗୁଡ଼ିକୁ ଭଲଭାବରେ ବୁଝି ନେଇଥିଲେ । ଏଥିପାଇଁ ସେ ସମୟ ଦେଖି ମଝିରେ ମଝିରେ ଅଂଶଦାନ-ସମୟଦାନ କଥା କହୁଥିଲେ । ସେତିକି ନୁହେଁ, ଏତେ ବିରାଟ ଗାୟତ୍ରୀ ପରିବାର ରୂପୀ ଅଖିଳ ବିଶ୍ୱରେ ଖେଳେଇହେଇ ରହିଥିବା ସଂସ୍ଥାକୁ ବି ଅଂଶଦାନରେହିଁ ପୋଷଣ-ପାଳନ କରିଥିଲେ । କୌଣସି ଅନ୍ୟାୟ ଅନୀତିଦ୍ୱାରା ଅର୍ଜିତ ଧନକୁ ସେଥିରେ ବ୍ୟବହାର କରିବାକୁ ଦେଉ ନ ଥିଲେ । ସବୁ ଧନର ରସିଦ ପ୍ରଦାନ କରିବା ଏକ ପରଂପରା ରହିଥିଲା ଏବଂ ରହିଥିବ । ସମାଜ ହେଉ କିମ୍ବା ଧାର୍ମିକ ସଂଗଠନ ସଂସ୍ଥାଗୁଡ଼ିକୁ ଏହି ଆଦର୍ଶରେ ଚଳିବାକୁ ହେବ । ବିଭିନ୍ନ ସମ୍ପ୍ରଦାୟରେ ଥିବା ବିଶ୍ୱରେ ଭାରତୀୟ ଧର୍ମର ଧନାଧ୍ୟକ୍ଷମାନଙ୍କ ପାଖରେ ଅକଳନ ଅର୍ଥ ରହିଛି । ସେମାନେ ଚାହିଁଲେ ଏହି ଦେଶକୁ ଏକ ସମର୍ଥ ଏବଂ ସଶକ୍ତ କରିଦେଇ ପାରିବେ । ଯଦି ନ କରନ୍ତି, ତେବେ ଆଗାମୀ ଦଶବର୍ଷରେ ତାକୁ ଜବରଦସ୍ତ ଛଡ଼େଇ ନିଆଯିବ ।

## ଭବିତବ୍ୟତା ଯୁଗ ପରିବର୍ତ୍ତନ

ଯେତେବେଳେ ଆମେ ସମସ୍ତେ ସନ୍ତୁଳିତ, ସମତୁଲ ଜୀବନ ଜୀଇଁବା, ସୀମିତ ସାଧନରେ ଜୀବନ ନିର୍ବାହ କରିବା, ଅନାବଶ୍ୟକ ପାଣ୍ଠି ସଂଗ୍ରହ ଏବଂ ପ୍ରଦର୍ଶନରେ ବିଶ୍ୱାସ ରଖିବା ନାହିଁ, ନିଜର ପିଲାଙ୍କୁ ଉତ୍ତରାଧିକାର ସୂତ୍ରରେ ଧନ ବଦଳରେ ଗୁଣକୁ ପ୍ରଦାନ କରିବା, ଶିକ୍ଷାରେ ଗୁଣବତ୍ତାକୁ ଭରିଦେବା, ତେବେ ଯୁଗ ଅବଶ୍ୟ ପରିବର୍ତ୍ତନ ହେବ ।

କ୍ରାନ୍ତିର ରେଳଗାଡ଼ି ଚାଲିବା ଆରମ୍ଭ କରି ଦେଇଛି । ଅର୍ଥରୁ ହିଁ ଆରମ୍ଭ ହେଇଛି । ଏବେ ବାହାଘର, ସାମାଜିକ ପ୍ରଚଳନ, ହୋଟେଲରେ ଖର୍ଚ୍ଚବହୁଳ ପାର୍ଟି, ମଦ୍ୟପାନ ସହ ଅନ୍ୟ ନିଶା ପଦାର୍ଥର ପ୍ରବନ୍ଧନ, ପୁଞ୍ଜିପତିଙ୍କଦ୍ୱାରା ନିୟନ୍ତ୍ରିତ ଶିକ୍ଷାତନ୍ତ୍ର, ନାରୀଙ୍କ ସହ ଦୁରାଚାର, ନଷ୍ଟହେଇ ଯାଉଥିବା ଶୈଶବ ବାଲାଶ୍ରମ, ନିଜର ଘର, ନିଜ କାର କିଣିବା ଇତ୍ୟାଦି ବନ୍ଦ ହେଲେ ହିଁ ଆଗାମୀ ୧୦ ବର୍ଷ ମଧ୍ୟରେ ଆମୂଳଚୂଳ ପରିବର୍ତ୍ତନ ହେଇପାରିବ ।



ବକ୍ସି ଜଗବନ୍ଧୁ -ପାଇକ ବିଦ୍ରୋହ

# ଯୁବା-କ୍ରାନ୍ତି ବର୍ଷ

## ୨୦୧୭-୨୦୧୮






**ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ନିମନ୍ତେ ବିଶେଷ ଅବଦାନ**

**ପାରଳା ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ**